# ଅଭିମତ

ଗୁଣି ଗଣାଗ୍ର ଗଣ୍ୟ ଉତ୍କଳ ମାତାର ସୁସନ୍ତାନ କବିବର ଫକୀର ମୋହନ ସେନାପତି ମହୋଦୟଙ୍କ ଠାରୁ ପ୍ରାପ୍ତ—

ଭକ୍ତ ସାଧୁଚରଣ ଦାସଙ୍କ ଜଣାଣ ପଦ୍ୟାବଳୀ ଆମୂଳ ପାଠକଲି। କବିଙ୍କ ଧର୍ମମତ ସହିତ ଯଦିଚ ମୋର ଧର୍ମ ମତର ସାମଞ୍ଜସ୍ୟ ନାହିଁ ତଥାପି ଗ୍ରନ୍ଥ ଖଣ୍ଡିକ ଶ୍ରଦ୍ଧା ସହିତ ପାଠ କରିଅଛି। ବେଦାନ୍ତ ଓ ଦର୍ଶନ ଶାସ୍ତ୍ରର ଅନେକ ଗୁଢ଼ ଗୂଢ଼ ଭାବ ଅତି ସହଜ ଭାଷାରେ କବି ଗ୍ରନ୍ଥରେ ପ୍ରକାଶ କରିବାକୁ ଚେଷ୍ଟାକରି କୃତକାର୍ଯ୍ୟ ହୋଇଅଛନ୍ତି। କବି ତାହାଙ୍କ ଉପାସ୍ୟ ଦେବତା ଠାରେ ତଦ୍‌ଗତ ଭାବରେ ମନ ପ୍ରାଣ ସମର୍ପଣ କରିଥିଲେ ବୋଲି ଗ୍ରନ୍ଥ ଖଣ୍ଡିକ ପରିଚୟ ପ୍ରଦାନ କରେ। କବି ଅନେକ ଗୁଢ଼ ପୁରାଣ ଓ କ୍ଷୁଦ୍ର କ୍ଷୁଦ୍ର ପୁସ୍ତିକା ପ୍ରକାଶ କରି ଯାଇଥିବାରୁ ଉତ୍କଳ ସାହିତ୍ୟ ତାହାଙ୍କଠାରେ ଋଣୀ। [illegible] [illegible], ବିଶେଷ ଏକ ଅଞ୍ଚଳସ୍ଥ ଲୋକେ ଭକ୍ତି ଭାବରେ କବିଙ୍କ ଗ୍ରନ୍ଥମାନ ପାଠ କରିଥାନ୍ତି। ଧର୍ମଭାବ ସାହିତ୍ୟକୁ ଉନ୍ନତି ପଥକୁ ପ୍ରେରିତ କରାଇ ଦିଏ। ବିଶେଷ ରୂପେ ଅନୁଶୀଳନ କଲେ ଦେଖାଯାଏ ଉତ୍କଳର ଭକ୍ତ କବିମାନେ ସାହିତ୍ୟକୁ ଏ ଯାବତ୍ କାଳ ଜାଗ୍ରତ ରଖାଇ ଅଛନ୍ତି। ଇତି।

(ସ୍ୱା) ଶ୍ରୀ ଫକୀର ମୋହନ ସେନାପତି ବାଲେଶ୍ୱର ୧୭।୯।୧୮

# ଜୟ ନୃସିଂହ

ଓଁ ଯତୋ ଭୂତାନି ଜାୟନ୍ତେ ଯେନ ଜୀବନ୍ତି ସର୍ବତଃ
ଯସ୍ମିଂଶ୍ଚ ବିଲୟଂ ଯାନ୍ତି ନାମ ତସ୍ମୈ ପରାତ୍ମନେ ॥

## ଭୂମିକା

ଜଣାଣ ପଦ୍ୟୋଦ୍ଧିର ଲେଖକ ପୂଜ୍ୟପାଦ ସାଧୁଚରଣ ମୌ। ବୋଧପୁର ।ପୁ। ପାଏଲା । ଜି। କଟକରେ ବାଂ ୧୬୦ ବର୍ଷ ପୂର୍ବରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପି[illegible] ନାମ ମହୀଧର ଦାସ ଓ ମାତାଙ୍କ ନାମ ସର ଦେଈ । ସେ ଜାତି [illegible] କରଣ ଥିଲେ । ଦେଶ ପ୍ରଚଳିତ ଶୃଙ୍ଖଳାରେ ସତରଫଳା ପ[illegible] ପଢିଥିଲେ । ଲୋକେ କହନ୍ତି ଉପରୋକ୍ତ ଗ୍ରାମରେ ବି[illegible] ଶ୍ରୀ ଲକ୍ଷ୍ମୀନୃସିଂହ ଦେବ ତାଙ୍କର ଇଷ୍ଟଦେବ ଥିଲେ । ସେ ଇଷ୍ଟଦେବ ଦର୍ଶନ ଓ ଇଷ୍ଟଦେବ ନାମ ସ୍ମରଣରେ ପ୍ରଭୂତ ଐଶୀ [illegible] ଲାଭ କରିଥିଲେ । ତାହାର ପରିଚୟ ସ୍ୱରୂପ ସେ ଏହି ଜଣା[illegible] ପଦ୍ୟୋଦ୍ଧି ପରି ଅନେକ ଗ୍ରନ୍ଥ ଲେଖିଯାଇ ଅଛନ୍ତି । କଥାରେ କହନ୍ତି "ଭାତ ହାଣ୍ଡିରୁ ଗୋଟିଏ ଚିପିଲେ, ଭାତ ହେବା ନହେବା ଜଣାହୁଏ ।" ଏହି ଜଣାଣ ପଦ୍ୟୋଦ୍ଧି ମନୋଯୋଗ କରି ପ[illegible]ଲେ—ଚିନ୍ତାଶୀଳ ପାଠକ ତାଙ୍କ ବିଷୟ ବୁଝି ପାରିବେ । ଜଣା[illegible] ପଦ୍ୟୋଦ୍ଧି ପାଠକର କୌଣସି କୌଣସି ଉକ୍ତି ଯାହା କହି ଅଛି କେତୋଟି ଏଠାରେ ଲେଖୁ ଅଛି—

୧—ଈଶ୍ୱର ଏକ ଅର୍ଦ୍ଧାଙ୍ଗ ଅଟନ୍ତି । ସେ ପୁରୁଷ ଓ ସ୍ତ୍ରୀ ଅଟନ୍ତି ।

୨—ଈଶ୍ୱରଙ୍କୁ ବିଶ୍ୱାସ କଲେ ସେ ଚଳାଇବେ ।

—ନାମହିଁ ବ୍ରହ୍ମ । ବିଶ୍ୱାସ ସହିତ ନାମ—ଯେ କୌଣସି ପ୍ରକାରେ
ଶ୍ୱରଙ୍କ ନାମ—ନେଲେ ସକଳ ଅମଙ୍ଗଳ ଦୂର ହୋଇଯାଏ ।
—ଜଣାଣପମ୍ଭୋଧି ପଢ଼ ଭକ୍ତି ଗ୍ରନ୍ଥ ପାଠରେ ଭକ୍ତି ଆସେ ।
—ଈଶ୍ୱର ସର୍ବତ୍ର ବିଦ୍ୟମାନ ଅଛନ୍ତି ଓ ସର୍ବ କର୍ମର ମୂଳ ।
ଶ୍ୱରଙ୍କ ସହିତ ଜୀବର ସାକ୍ଷାତ ସମ୍ବନ୍ଧ ରହିଛି । ସେ ସମ୍ବନ୍ଧ ବୁଝି
ଉଠିଲେ ସବୁ ଗଣ୍ଡଗୋଳ ଚୁକିଯାଏ । ବିଶ୍ୱାସ ହେଲେ ସମସ୍ତେ ଈଶ୍ୱର-
ପାଇବେ । ତେବେ ବିଳମ୍ବ ଓ ଶୀଘ୍ର ଏହି ମାତ୍ର ପ୍ରଭେଦ ।
—ବିଶ୍ୱାସ ଓ ପ୍ରେମରେ ଈଶ୍ୱର ଲାଭ ହୁଏ । ଅର୍ଥାତ୍ ଈଶ୍ୱର
ତ୍ର ଅଛନ୍ତି ଏହା ବିଶ୍ୱାସ କରି ସର୍ବ ଭୂତରେ ପ୍ରୀତି ପ୍ରଦର୍ଶନ
ଜକ କର୍ତ୍ତବ୍ୟ କର୍ମ କଲେ ଈଶ୍ୱର ମିଳନ୍ତି ।
—ସେବା ବା କର୍ତ୍ତବ୍ୟ କର୍ମ କରିବାକୁ ଜୀବ ସଂସାରକୁ ଆସି-
ଛି । ଏ ସଂସାର ଈଶ୍ୱରଙ୍କର କର୍ମ କ୍ଷେତ୍ର । କେତେବେଳେ କ
ର୍ମ କରିବାକୁ ହେବ ମଙ୍ଗଳମୟ ବିବେକ ବାଣୀରେ କହିଦେବେ
।ହି ବାଣୀ ମାନି ଚଳିଲେ ସମସ୍ତ କ୍ଲେଶ ( ଛ କାୟିକ ଛ
ନସିକ ସକଳ ପ୍ରକାର କ୍ଲେଶ ) ଦୂର ହୁଏ ।
—ଈଶ୍ୱର ସାକାର ଓ ଈଶ୍ୱର ନିରାକାର ଅଟନ୍ତି । ଭକ୍ତ ଯେ
ୌଣସି ଭୋଟିକୁ ଆଶ୍ରୟ କରି ଈଶ୍ୱର ଲାଭ କରେ ।
—କେହି କହିପାରେ ଯୋଗ କଲେ ଶୀଘ୍ର ସନ୍ଦେହ ଦୂର ହୁଏ
। ସତ୍ୟ, ମାତ୍ର ଈଶ୍ୱରଙ୍କର ଅନନ୍ତ ନାମରୁ କୌଣସି ଗୋଟିଏ
ମ ମନେ ମନେ ଅନବରତ ସ୍ମରଣ କଲେ କ ଅନିର୍ବଚନୀୟ
ନନ୍ଦ ହୁଏ ? ସାଧକ ନିଜେ କର୍ମରେ ପରିଚୟ ପାଇବେ । ଧନ-
ମ୍ପତ୍ତି ପ୍ରଭୃତ ଧନ ଓ ଏହି ନାମ ଧନ ଅତି ସୁଲଭ ।

୧୦—ଭଗବାନଙ୍କୁ ପାଇବା ସକାଶ କେବଳ ଜଙ୍ଗଲକୁ ଗଲେ ବା
ଜପ ଜପ ମାଳା ଗଡ଼ାଇଲେ ବା ବଳୁତ ମାଖିହୋଇ ଚମୂଟାଟାଏ
ଧରିଲେ ବା ପାଷପଦ ହାତ ଗୋଡ଼ କଗୃଡ଼ କହିଲେ ବା ଲେଖିଲେ
ଛଛ ହୁଏ ନାହିଁ । ପରନ୍ତୁ ତାଙ୍କ କର୍ମ ଦେଖି ତାଙ୍କୁ ମନ ଦେଲେ ଓ
ତାଙ୍କପାଇଁ କର୍ତ୍ତବ୍ୟ କର୍ମ କଲେ, ଅର୍ଥାତ୍ ଈଶ୍ୱର ସବୁଠାରେ
ଅଛନ୍ତି ଯାହା କରିବ ସବୁ ଈଶ୍ୱରଙ୍କ ପାଇଁ କରିବ, ମତେ ଈଶ୍ୱର
ଶକ୍ତି ଦେଇଅଛନ୍ତି, ମୁଁ ତହିଁର ସଦ୍‌ବ୍ୟବହାର ନକଲେ ମୋର
ପ୍ରଭୁର କଷ୍ଟ ହେବ, ଅତଏବ ମୁଁ ସତ୍‌କର୍ମ କରେ । କେଉଁ କର୍ମ
ସତ୍ ଓ କେଉଁ କର୍ମ ଅସତ୍ ପ୍ରଭୁ ସବୁବେଳେ ବିବେକ ବାଣୀରେ
କହୁ ଅଛନ୍ତି ତେବେ କର୍ମ କଲେ ସମ୍ୟକ ବୁଦ୍ଧି ହୁଏ ଓ ଈଶ୍ୱର
ପ୍ରାପ୍ତି ହୁଏ । ଯେ କର୍ମ କଲେ ଛେଳରେ ଅଶାନ୍ତି ହୁଏ ତାହା ଅସତ୍
ବା ପାପ କର୍ମ ଓ ଯାହା କଲେ ପଛରେ ଆନନ୍ଦ ହୁଏ ଆରମ୍ଭରେ
କଷ୍ଟ ହେଲେହେଁ ପଶ୍ଚାତ୍ ସୁଖ ବୋଧହୁଏ ତାହା ସାଧୁ କର୍ମ ।

୧୧—କେବଳ ବ୍ୟାକୁଳ ହେଲେ ହେବନାହିଁ । କର୍ମ କରିବାକୁ
ହେବ କର୍ମ ନକଲେ ଅଶାନ୍ତି ଅଗ୍ନି ଚିରକାଳ ରହିଥିବ ।

୧୨—ସାଧୁ ପୁସ୍ତକ ପାଠ ସାଧୁ ସହବାସ ତୁଲ୍ୟ ।

୧୩—ଇହକାଳ ଛଡ଼ା ପରକାଳ ଅଛି । ଈଶ୍ୱରଙ୍କ ନିକଟରେ
ପରକାଳରେ ନିଶ୍ଚୟ କର୍ମାକର୍ମର ହିସାବ ବୁଝାଇବାକୁ ହେବ ।

୧୪—ସମସ୍ତେ - ଜୀବିତ ଓ ନିର୍ଜୀବ ସମସ୍ତେ ଈଶ୍ୱରଙ୍କଠାରୁ ଜାତ ।
ଈଶ୍ୱରଙ୍କୁ ନମାନିଲେହେଁ ତାଙ୍କର ଶକ୍ତିରେ ସେ ସମସ୍ତଙ୍କୁ ଅଧୁଗ୍ରାଧୀନ
କରି ସତ୍‌ପଥକୁ ଟାଣିନେଇ ସତ୍‌କର୍ମ କରାଇ ନିଜ ପଦତଳେ
ଦେବେ । କାରଣ ପିତା ପୁତ୍ର କନ୍ୟାକୁ ଦେଖାଦେଇ ତାଙ୍କଦ୍ୱାର

ସତ୍‌କର୍ମ କରନ୍ତ ଅଧିକାର ନିବାରଣ ହେବାରେ ଦେଖାଯାଏ ।

୧୫—ଚରୈବଂ ଉଦ୍ୟୋଗଶୀଳତା ଭଲ ତଥାପି ଉଚ୍ଛୃଙ୍ଖଳତା ଭଲ ନୁହେଁ । ଅର୍ଥାତ୍ କର୍ମ କରୁ କରୁ ଧରୁ ସୁବିଧା ଅଟେ । କେବଳ ବସିରହିଲେ ଦୁଃଖ ଯିବନାହିଁ । ସତ୍ ହେଇ ବା ଅସତ୍ ହେଇ କର୍ମକର । ଅସତ୍-କର୍ମ କରୁ, ଅନେକ ଧକ୍କା ଖାଇ, ସତ୍‌କର୍ମକୁ ନିଶ୍ଚୟ ଆସିପାରିଯାଏ ।

୧୬—ଅନନ୍ତ ଶାସ୍ତ୍ର ଦେଖି ପଢି ଶୁଣି ନ ବୁଝି ଅସ୍ଥିର ହୁଅନାହିଁ । କର୍ତ୍ତବ୍ୟ କଣ ପ୍ରଭୁ ହୃଦୟରେ ବିବେକ ବାଣୀରେ କହୁଅଛନ୍ତି । ଶୁଣି କର୍ମକର - କାନ ନଥିଲେ ମାଆ ପ୍ରଭୁ ଦେବେ । ଅଖି ନଥିଲେ ଶୁହଁ ଦୟାମୟ ଦେବେ, କର୍ମକରିବା ଶକ୍ତି ନାହିଁ, ମନେକଲେ ମାଆ ମଙ୍ଗଳମୟ ଦେବେ ।

୧୭—ଯାହାକରିବ ସବୁ ପ୍ରଭୁ ପାଇଁ କର" ଏହାହିଁ ବ୍ରହ୍ମାର୍ପଣ ।

୧୮—ଈଶ୍ୱର ସବୁବେଳେ କରୁଣାମୟ ଓ ପତିତ ପାବନ, ଅସତ୍ କର୍ମକଲେ ଦଣ୍ଡ ଦୁଃଖ ଯନ୍ତ୍ରଣା କ୍ଳେଶ ଦେଇ, ପ୍ରଭୁ-ମଙ୍ଗଳମୟ, ସତ୍‌ପଥକୁ ଅଣିବେ । ଦଣ୍ଡ ଦୁଃଖ ଯନ୍ତ୍ରଣା ଦେଖି ଈଶ୍ୱରଙ୍କୁ ଦୋଷାରୋପଣ କରିବା ଭ୍ରମମାତ୍ର । କାରଣ ବିପଦ ଅସେ ଅନେକ ଶିକ୍ଷାଦେବାକୁ- ଏକଥା ସାଧକ ନିଜେ ଅନୁଭବ କରିପାରେ ଏ ସମ୍ବନ୍ଧରେ ବେଶି କିଛି ଲେଖା ନିଷ୍ପ୍ରୟୋଜନ । ପାଠକ ନିଜେ ଭାବିଦେଖନ୍ତୁ । ବିପଦ ନଥିଲେ ମୋହାନ୍ଧଜୀବ ସହଜରେ ଅସତ୍‌ପଥ ଛାଡ଼େ ?

୧୯—ଈଶ୍ୱର ଭକ୍ତର ମନ୍ତ୍ର ଯନ୍ତ୍ର ତନ୍ତ୍ର ସାଧକଙ୍କଠି ଅନିଷ୍ଟକର ପାରେ ନାହିଁ । ବା, ସର୍ପ, ଭୂତ, ପିଶାଚ, ରାକ୍ଷସ, ଦୁଷ୍ଟଗ୍ରହ, ଚଳନ୍ତି

ସକଳପ୍ରକାର ହିଂସ୍ରକ ମାନେ କିଛି ଅନିଷ୍ଟ କରିପାରନ୍ତି ନାହିଁ । କାରଣ ଈଶ୍ୱର ସବୁବେଳେ ଭକ୍ତର ସହାୟ ହୋଇ ସବୁଠାରେ ନିଜ ଭକ୍ତକୁ ରକ୍ଷା କରୁଥିବାରୁ ଉଦାହରଣ ସତସ୍ୱରୂପ ଦେଖାଯାଏ ।

୧୦—ତାଙ୍କୁ ଭକ୍ତ ସତ୍କର୍ମ ପରାୟଣ ସାଧକ - ନିକଟରେ ଧର୍ମ ଅର୍ଥ କାମ ମୋକ୍ଷ ସବୁବେଳେ ସୁଲଭ ।

୧୧—ନିଜ ନିଜ ଇଷ୍ଟଦେବତାଙ୍କ ନାମ ମଧ୍ୟ ତାରକନାମ । ଗ୍ରନ୍ଥକର୍ତ୍ତା ନୃସିଂହ ଦେବଙ୍କୁ ଇଷ୍ଟଦେବତା ବୋଲି ଗ୍ରହଣ କରିଥିବାରୁ ତାଙ୍କର ନାମ ସ୍ମରଣ କରୁଥିଲେ । ତାହା ଏହି ଗ୍ରନ୍ଥରେ କହିଛନ୍ତି ।

“ନୃସିଂହ ନାମ ଭୂମିର ଯେ ପ୍ରଭୁ ପରମ ତେଜ,
ଏଣୁକରି ସେହି ନାମକୁ କରଅଛି ମୁଁ ସାଜ ।”

୧୨ ପ୍ରଭୁ ନାମ ଯେତେନେବ ସେତେ ମଙ୍ଗଳ—ଖାଇବା, ପିଇବା, ଶୋଇବା, ବୁଲିବା, କର୍ତ୍ତବ୍ୟ କର୍ମ କରିବାବେଳେ ମଧ୍ୟ ସବୁବେଳେ ନାମକର ଓ କର୍ତ୍ତବ୍ୟକର୍ମ କର । କର୍ତ୍ତବ୍ୟ କର୍ମ କରିବା ପୂର୍ବରୁ ପ୍ରଭୁର ନାମ ନେଇ କର୍ତ୍ତବ୍ୟକର୍ମ କର । ଗ୍ରନ୍ଥକାର ପୈତ୍ରିକ ଧନ ଥିଲେ ସେ ତାଙ୍କର ଇଷ୍ଟଦେବତା ବୋଧପୁର ଗ୍ରାମରେ ବିରାଜିତ ଶ୍ରୀ ଲକ୍ଷ୍ମୀନୃସିଂହ ଦେବଙ୍କୁ ସବୁବେଳେ ଧ୍ୟାନ ଓ ତାଙ୍କ ନାମ ସ୍ମରଣ କରୁଥିଲେ—ତହିଁର ଫଳ ସ୍ୱରୂପ ସେ ସମ୍ପୂର୍ଣ୍ଣ ନୃସିଂହ ପୁରାଣ, ଜଣାଣଚନ୍ଦ୍ରିକା, ଶ୍ରୀମଦ୍‌ଭାଗବତ ଗୀତା ପ୍ରଭୃତି ଅତି ସରଳ ଭାବରେ ଲେଖି ଯାଇଅଛନ୍ତି—ଉକ୍ତ ଗ୍ରନ୍ଥମାନଙ୍କ ମଧ୍ୟରୁ କେବଳ “ଗୀତା” କଟକର ମାନ୍ୟବର ଶ୍ରୀଯୁକ୍ତ ସଜନାରାୟଣ ପଣ୍ଡିତ ପ୍ରକାଶ କରାଇ ଅଛନ୍ତି । ହରିନାମ ସ୍ମରଣ କରୁ କରୁ ପୂର୍ବ ଓ ପରଜନ୍ମ କଥା ଜାଣି ଗ୍ରନ୍ଥକାର କହିଅଛନ୍ତି—

“ଜଳସମ, ସାଧୁଚରଣ, ଦ୍ୱାରକା, ଏକଜାଣ
ଏଥୁ ଅନ ଥିଲେ ସୁଜନେ କରବଯେ ବଖାଣ”

ଗ୍ରନ୍ଥକାର ଏହାଦ୍ୱାରା ପ୍ରକାଶ କରୁଅଛନ୍ତି—ସେ ବଳରାମଦାସ ହୋଇଥିଲେ ଓ ଦ୍ୱାରକା ଦାସ ହେବେ

୧୩—ଅକୁଳତା—ଅନୁତାପ—ସ୍ତୋତ୍ରବଦ୍ୱାର, ଈଶ୍ୱର ବନ୍ଦନା ଓ ହରିନାମ ସ୍ମରଣରେ ହରି ମିଳନ୍ତି ।

୧୪—ଦୁର୍ଲ୍ଲଭ ମନୁଷ୍ୟଜନ୍ମ ଲଭିକରି ଈଶ୍ୱରଙ୍କୁ ଲଭ କରିବାକୁ ସର୍ବଦା ଚେଷ୍ଟା କରିବ—ଚେଷ୍ଟା କଲେ ନିଶ୍ଚୟ ଈଶ୍ୱରଙ୍କୁ ପାଇବ

ବାହୁଲ୍ୟ ଭୟରେ [illegible] ଅନେକ ମନ୍ତବ୍ୟ ଲେଖିବାରୁ କ୍ଷାନ୍ତ ହେଲୁ । ଇତି—

ପ୍ରକାଶକ

ଶ୍ରୀ ଅଦ୍ୱୈତ ଚରଣ ପଟ୍ଟନାୟକ

# ଲକ୍ଷ୍ମୀ ନୃସିଂହ ଓ ଭକ୍ତ କବି ସାଧୁଚରଣ

ଲକ୍ଷ୍ମୀନୃସିଂହ ଦେବ ବୋଧପୁର ଗ୍ରାମର ଇଷ୍ଟଦେବ। ଏହି ଗ୍ରାମରେ କେବଳ ହିନ୍ଦୁମାନେ ବାସ କରନ୍ତି । ବ୍ରାହ୍ମଣ କରଣମାନଙ୍କ ସଂଖ୍ୟା ଏଠାରେ ବେଶି । କଥିତ ଅଛି ଏହି ଦେବମୂର୍ତ୍ତି ବଳଦେବରାଜ ନାମକ ଜଣେ ବ୍ରାହ୍ମଣ କାଶୀରୁ ଆଣି ତାଙ୍କ ନିଜ ଗ୍ରାମ ପଦ୍ମରାଜପୁରରେ ରଖିଥିଲେ । କାଳକ୍ରମେ ପଦ୍ମରାଜପୁର ଗ୍ରାମ ଜମିଦାର ଯେତେବେଳେ ହିନ୍ଦୁ ପରିବର୍ତ୍ତେ ମୁସଲମାନ ମାନେ ହେଲେ ସେତେବେଳେ ସେ ଗ୍ରାମରେ ମୁସଲମାନ ବେଶି ବାସ କଲେ ଏହି ଦେବତା ସେଠାରେ ଆଉ ରହିବାକୁ ଇଚ୍ଛା ନକରି ବୋଧପୁର ଚୌଧୁରୀ ବଂଶର ଜଣେ ବଂଶଧରଙ୍କୁ ସ୍ୱପ୍ନରେ ବ୍ରାହ୍ମଣ ମୂର୍ତ୍ତି ହୋଇ ଦେଖାଦେଇ ତାଙ୍କୁ ପଦ୍ମରାଜପୁରରୁ ଘେନି ଆସିବାକୁ ଆଦେଶ ଦେଲେ । ତଦନୁଯାୟୀ ତାଙ୍କର ଅଧିଷ୍ଠାନ ବୋଧପୁରରେ ହୋଇଥିବାର କଥିତ ଅଛି । ଏହା ବହୁଦିନ ତଳର କଥା । ଭକ୍ତ କବି ଜଗନ୍ନାଥ ସ୍ତୁତି ଓ ଲକ୍ଷ୍ମୀନୃସିଂହ କବଚ ପ୍ରଭୃତି ଗ୍ରନ୍ଥ ଲେଖକ ଶ୍ରୀ ସାଧୁଚରଣ ଦାସଙ୍କ ବାସ ସ୍ଥାନ ଏହି ଲକ୍ଷ୍ମୀନୃସିଂହ ଦେବଙ୍କ ମନ୍ଦିରର ନିକଟବର୍ତ୍ତୀ । ଅତଏବ ଏ ମହାତ୍ମା ପିଲାବେଳରେ ଅଧିକାଂଶ କାଳ ସେହି ମନ୍ଦିର ମଧ୍ୟରେ ଖେଳ ବୁଲି କାଟୁଥିବା ସ୍ୱାଭାବିକ କ୍ରମଶ ଏହାଙ୍କର ବୟୋବୃଦ୍ଧି ସଙ୍ଗେ ସଙ୍ଗେ ଏହାଙ୍କ ମନରେ ଭକ୍ତି ଭାବର ଉଦ୍ରେକ ହୋଇଥିଲା । କୌଣସି କାର୍ଯ୍ୟ କରିବାକୁ ହେଲେ ଲୋକର ଇଚ୍ଛା ଶକ୍ତି ଓ ତାହା ସଙ୍ଗେ ସଙ୍ଗେ ମଧ୍ୟ ସତ୍ତ୍ୱ ପ୍ରକାରର ବୁଦ୍ଧିର ଆବିର୍ଭାବ ହୋଇଥାଏ । ସାଧୁଚରଣଙ୍କର ଇଚ୍ଛାଶକ୍ତି ଥିଲା

ତାହା ସଙ୍ଗେ ସଙ୍ଗେ ତାଙ୍କ ଘରେ ଅନେକ ପ୍ରକାର ସଂସ୍କୃତ ପୋଥି ପଢିବାକୁ ପାଉଥିଲେ । ତାଙ୍କର ଲେଖାରୁ ଜଣାଯାଏ ଯେ ସେ ଅନେକ ସଂସ୍କୃତ ଗ୍ରନ୍ଥ ଅଧ୍ୟୟନ କରିଥିଲେ । ତାଙ୍କର ଲିଖିତ ଲକ୍ଷ୍ମୀ-ନୃସିଂହ କବଚ, ରଘୁନାଥ କବଚ ଓ ଗୀତା ସଂସ୍କୃତର ଅନୁବାଦ ମାନ । ସମସ୍ତ ପୁସ୍ତକରେ କେବଳ ସେ ସଂସ୍କୃତ ଭାବକୁ ଓଡ଼ିଆରେ ପ୍ରକାଶ କରିଛନ୍ତି । ତାହା ଏପରି ଭାବରେ ଲେଖାହୋଇ ଅଛି ଯେ ସାଧାରଣ ସଂସ୍କୃତାନଭିଜ୍ଞ ଲୋକ ତାକୁ ସହଜରେ ବୁଝି ପାରିବ ନାହିଁ । ଉଦାହରଣ ସ୍ୱରୂପ ମୁଁ ଲକ୍ଷ୍ମୀନୃସିଂହ କବଚର ୧ ମ ପଦ ପାଠକ ମାନଙ୍କ ଅବଗତି ପାଇଁ ନିମ୍ନରେ ଲେଖିଲି ।

ଅରଣ୍ୟେକ ଋଷି          ଅନୁଷ୍ଟୁପ ଛନ୍ଦ
ଦେବତା ନୃସିଂହ ମୂର୍ତ୍ତି
ଚପ୍ର ହାଟକ କେଶାନ୍ତ          ଯାର୍ଯ୍ୟଜ୍ୱାଳା
ଅଗ୍ନି କଣିକା ଯେ ଶକ୍ତି
ଅଭିଷ୍ଟ ସିଦ୍ଧି          ଦନଯୋଗ ବସ୍ପର
ଏବେ ଧ୍ୟାନକର ତତ୍ତ୍ୱ
ସଦ୍ଜ୍ଞାନ ମୁଖ          ସ୍ୱରୂପ ନିର୍ମଳ
ଖିସର୍ବ୍ବି ମଧ୍ୟରେ ସ୍ଥିତ । ଇତ୍ୟାଦି ।

ଉଲ୍ଲିଖିତ ଲେଖା କବିଙ୍କର ପ୍ରାଥମିକ ଅବସ୍ଥାର ଲେଖା ବୋଲି ସହଜରେ ଅନୁମାନ କରାଯାଇ ପାରେ । କବି ଯେତେବେଳେ ଲେଖା ଲେଖିବାରେ ପୂର୍ଣ୍ଣ ଦକ୍ଷତା ଲାଭ କରିଥିଲେ ଏବଂ ଯେତେବେଳେ ଈଶ୍ୱର ଭକ୍ତିଭାବ ତାଙ୍କ ମନରେ ଦୃଢ଼ୀଭୂତ ହୋଇଥିଲା ସେତେବେଳେ ସେ ଏହି ଜଣାଣପୟୋଧି ଗ୍ରନ୍ଥ ଲେଖିଥିବାର

ଅନୁମାନ କରାଯାଏ । ସେ ନିର୍ଜନତାକୁ ଖୁବ ଭଲ ପାଉଥିଲେ । ଏହି ଗ୍ରନ୍ଥଟିକୁ ଅଧିକାଂଶ ସମୟ ନିର୍ଜନରେ ବସି ଲେଖି ଥିବାର କେତେକ ଲୌକିକ କଥାରୁ ପ୍ରକାଶିତ ହୁଏ ।

ଗ୍ରାମର ପୂର୍ବ ପାଖର ଶ୍ମଶାନର ଅନତି ଦୂରରେ ଗୋଟିଏ ପ୍ରକାଣ୍ଡ ବରଗଛ ଥିଲା ତାହା ପ୍ରାୟ ୨ । ୩ ଏକର ଜମି ବ୍ୟାପି ରହିଥିଲା । ସ୍ଥାନଟି ବଡ଼ ପ୍ରଶସ୍ତ । ଏହା ତଳେ ପାଇକାନଈ ବହି ଯାଉଅଛି । କେବଳ ନଦୀ ବଢି ସମୟରେ ଯେତେବେଳେ ଏଠାରେ ପ୍ରଚୁର ପରିମାଣରେ ଜଳହୁଏ ସେ ସମୟ ବ୍ୟତୀତ ଅନ୍ୟ ସମୟ ମାନଙ୍କରେ ଏହି ଗଛତଳେ ବସିଲେ ଯେ କେହି ଲୋକ ମନରେ ଅପୂର୍ବ ଆନନ୍ଦ ଅନୁଭବ କରିବ ଏଥିରେ ସନ୍ଦେହ ନାହିଁ । ଆଜକୁ ବ ୨୦ ବର୍ଷ ହେବ ସେ ଗଛଟି କାଳର ପ୍ରଭାବରେ ସେ ସ୍ଥାନରୁ ଲୋପ ପାଇ ଅଛି । ଏହି ଗଛ ମୂଳରେ ବସି ସାଧୁଚରଣ ଗ୍ରନ୍ଥ ମାନପାଠ କରିବାକୁ ଓ ଲେଖାଲେଖି କରିବାକୁ ଭଲ ପାଉଥିଲେ । ସେ ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ ନିରବଚ୍ଛିନ୍ନରେ ଏହିଠାରେ ବସି ପଢା ଓ ଲେଖିବା କାର୍ଯ୍ୟ କରୁଥିଲେ ଏବଂ କେହି ତାଙ୍କୁ ଡାକିବାକୁ ନ ଗଲେ ସେ ଆସୁ ନ ଥିଲେ ।

ଉଲ୍ଲିଖିତ ବିଷୟ ଗ୍ରାମର ଲୋକ ମୁଖରେ ନିମ୍ନ ଲିଖିତ ରୂପେ ପ୍ରଚଳିତ ଅଛି । ସାଧୁଚରଣ ଘରୁ ଚାଲିଯାଇ ପିଙ୍ଗୁ ପତ୍ର ରେ ଓ କଣ୍ଟାରେ ପ୍ରଥମେ ଲେଖି ଲେଖି ସେଠାରେ ଲୁଚି ବସି ଲେଖିପଢି ଶିଖିଥିଲେ । ଏହା ପ୍ରଚଳିତ କଥା, କିନ୍ତୁ ବୋଧହୁଏ ସେ ସେଠାରେ ବସି ତାଙ୍କର ନିଜର ଉଦ୍ଦେଶ୍ୟ ସିଦ୍ଧି କରୁଥିଲେ । କିନ୍ତୁ ଲୋକେ ତାହା ବୁଝି ନପାରି ଉଲ୍ଲିଖିତ ରୂପେ ପ୍ରକାଶ କରୁଛନ୍ତି । ଉକ୍ତ କବିଙ୍କ ମୃତ୍ୟୁ

ପରେ ତାଙ୍କର ବଂଶଧର ମାନେ ତାଙ୍କର ସଂସ୍କାର କିମ୍ବା ସେହି ଚରଣଙ୍କ ମୂଳରେ କରାଇ ଥିଲେ, କାରଣ ସେ ସେହି ଚରଣଙ୍କ ମୂଳରେ ବସୁଥିଲେ ଓ ସେ ସେଠାରେ ଲେଖିବାକୁ ଭଲ ପାଉଥିଲେ । ସେ ସ୍ଥାନଟି ଏପର୍ଯ୍ୟନ୍ତ ରହିଅଛି । ଗ୍ରାମର ଲୋକେ ତାହାଙ୍କୁ ସାଧୁଚରଣଙ୍କ ପାଦ ବୋଲି କହନ୍ତି ଓ ସମୟେ ୨ ସେ ଠାରେ ଭୋଗରାଗ କରାଇ ଭକ୍ତ କବିଙ୍କ ପ୍ରତି ଉପଯୁକ୍ତ ଭକ୍ତି ଦେଖାଇଥାନ୍ତି । ଏହାଙ୍କ ଲିଖିତ କେତେ ଗୁଡ଼ିଏ ଗ୍ରନ୍ଥ ଏହାଙ୍କ ବଂଶଧରମାନେ ଫୁଲ ଚନ୍ଦନ ଦେଇ ସାଦରରେ ପୂଜା କରୁଅଛନ୍ତି । ମୁଁ ସେଗୁଡ଼ିକ ଦେଖିବାକୁ ଅନେକ ବାର ଚେଷ୍ଟା କଲେ ମଧ୍ୟ ସେମାନେ ପାଦ ଭଙ୍ଗି ତହିଁରୁ ଖଣ୍ଡିଏ ମାତ୍ର ଦେବାପାଇଁ ଅନିଚ୍ଛୁକ । ପ୍ରଭୋ! ଏ ଅନ୍ଧକାର ଦେଶରୁ କେବେ ଦୂରୀଭୂତ ହେବ ତାହା ତୁମ୍ଭଙ୍କୁ ଜଣା । ସେ ପାଦରୁ ମୁଁ ସମସ୍ତ ପୋଥି ଦେଖି ତାହା ଜନଗଣ ପ୍ରକାଶ କରିବା ପାଇଁ ଯଥାସାଧ୍ୟ ଚେଷ୍ଟା କରିବି ଓ ଆଶାକରେ ଅବଶ୍ୟ ଏହି ସମ୍ବନ୍ଧରେ ସେହି ଲକ୍ଷ୍ମୀନୃସିଂହଙ୍କ କୃପାରୁ କୃତ କାର୍ଯ୍ୟ ହୋଇ ପାରିବି ।

ଶ୍ରୀ ମଦନମୋହନ ଦାସ

# ଜଣାଣପୟୋଧି

ରାଗ—ରାମକେରୀ

ଜୟ ଜୟ ଜଗମୋହନ ନୀଳକନ୍ଦର ବାସୀ,
ଶ୍ରୀମୁଖ ମଣ୍ଡଳ ବସନ୍ତେ କୋଟି ଲାବଣ୍ୟ ରାଶି ।
ଭକତ ଜନଙ୍କ କାରଣ କର କରୁଣା ସିନ୍ଧୁ,
ଏଣୁକରି ମୁହିଁ ଜଣାଣ କଲି ରଖ ଅପଦୁଁ ।
ଦାରୁବ୍ରହ୍ମ ରୂପ ପ୍ରକାଶି ହେଲ ଅଛେଦ ବାନ୍ଧୁ,
ଏ ରୂପେ ଶରଣ ପଶିବ ବାରେ ଅଙ୍ଗୀ ଯେ ଦେଇ ।
ଶରଣ ତାରଣ ବୋଲଣ ମୁହିଁ ଗଲି ଶରଣ,
ଭାବଇ ହୃଦରେ ଭକତ ଦାସ ସାଧୁଚରଣ ।
ବାଛୁର ମୋତେ କର କାରଣ ମୁହିଁ ଗଲି ଶରଣ ।
ବିଭୀଷଣ ସୁଗ୍ରୀବରଙ୍କୁ କରଅଛ କାରଣ ।
ଅଭୟ ପଞ୍ଜର ବୋଲଣ କରୁଅଛ ଗୁହାରି,
ତୁମ୍ଭେ ଦାରୁଣ ହୋଇଲ କରେ ଦୟା ନକର ।
ଜଗନ୍ନାଥ ରୂପ ସୁନ୍ଦର ସ୍ମରଣେ ପ୍ରମାଣ,
ଏଣୁକରି ମୁହିଁ ଜଣାଣ କରୁଅଛଇ ଜାଣ ।
ତୁମ୍ଭଙ୍କୁ ମଦନକେଶରୀ ମୁଁ କରଅଛି ହୃଦରେ,
ଲଜ୍ଜାଧର ବୁଡ଼ି ମରୁଛି ପଡ଼ି ଭବସାଗରେ ।
ତୁମ୍ଭେ ନିର୍ଦ୍ଦୟ ହୋଇଲ ଭବ ସାଗର ଦେଖି,
ସାଧୁଚରଣ ଦାସଙ୍କୁ ଯେ ପ୍ରଭୁ ନପାର ରଖି ।
ମୁଁ ହି ବାରବାର ବୋଲଣ କରେ ମଣି ଥିଲଇଁ,
ଏବେତ ଅବାର ବୋଲଣ ମନେ ଦୁଃଖିଅଛଇଁ

ମୁଁହି ଅବା ଯେବା ଠକିଲି ନର ଲୋକଙ୍କୁ ଧରି,
ତୁମ୍ଭେ ତ କରୁଣା ସାଗର ଅଃ ରଥାଙ୍ଗ ଧାରୀ
ରବିଙ୍କ ଛବିଯେ ନାଶଇ ତେଜ ଅଟେ ଏମନ୍ତ,
ପାତକ ଅନ୍ଧାର ନପାଇଁ ଯାଉନାହିଁ ଅନନ୍ତ ।
ସନ୍ତୁପ୍ରାପ୍ତ ପାପ ଘୋଟିଲା ମୋର ଶରୀର ଯାକ,
ହସ୍ତରେ ନପାଇଁ ଚକ୍ରହେ ଅଛି ବ୍ରହ୍ମାଣ୍ଡାସୁକ ।
ଚକ୍ରଙ୍କ ବଳ ଦୋଇଗଲା ? ତାର ତେଜକୁ ଦେଖି,
କଳରେ ପରାକ୍ରମ ନାହିଁ ହେ ଅବା ଚକା ଅଖି ।
ପୂର୍ବେ ମୁହିଁ ଶୁଣିଥିଲିହେ ବେଦ ପୁରାଣ ବାଣୀ,
ଏଣୁ ଅସ୍ଥା କରି ରହିଲି ପାଦ କମଳେ ପୁଣି ।
ଦନୁଜ କୂଳକୁ କାଳଯେ ହୋଇଥିଲ ଅପଣି,
ଏବେ କେଉଁଣେଗଲା ସେ ମାନ ? କର୍ମ ହେଲା ଦାରୁଣି
ମୁଁହି ବୋଲୁଅଛି ନାଥ ହେ କଳିଦେଖି ଡରିଲି,
ସେଥିପାଇଁ ମାନବ ଶରୀର ମୋତେ ଶ୍ରୀହରି ଦେଲ ।
ତୁମ୍ଭନାମ ନଭଜଲତ ମନ ହେଲା ଚଞ୍ଚଳ,
ଏ କରୁଁ ଯେ କାଟି ଚଳିବ ପୂର୍ଣ୍ଣ ଏ କଳିକାଳ ।
ଏତେ ନିଷ୍ଠୁର ହୋଇଲ ହେ ସ୍ୱାମୀ ଜାଣି ନଥିଲି,
ତୋହର ମାୟାରେ ପଡ଼ିଣ ନରଲୋକେ ଅଇଲି ।
ମଧ୍ୟା ଶରୀରକୁ ଘୋଟିଲା ଯେତ୍ନେ ବିଷମ ଘାତ,
ହୃଦକର ପଡ଼ିଯାଉଛି ରକ୍ଷ କମଳା କାନ୍ତ ।
କାରଣ କଳିଯେ ବାରଣ ରଥାଙ୍ଗକୁ ଯେ ଦେଶି
ସଧୂଚରଣ ଯେ ଭ୍ରମଇ ଏହା ମନେ ଭରସି ।

କି ଅଦ୍ଭୁତ ମୂର୍ତ୍ତି ସ୍ୱାମି ହେ ତୁମ୍ଭେ ବଡ଼ ଦାରୁଣ,
ପ୍ରଦ୍ୟୁମ୍ନ ପ୍ରାପ୍ତ କୁମରକୁ କହୁଅଛ ନିଧନ ।
ଅଜ କାହାଠାରେ କରୁଣା କରୁଅଛି ଗୋସାଇଁ,
ନ ଜାଣି ନରେ ଯେ ସ୍ମରିଲେ ତୋର ଚରଣ ଧ୍ୟାୟି ।
ପ୍ରଥମେ ଦୟା ଦେଖାଉଛ ଯେ ପଛେ କରୁଛ ମାୟା,
ଏଡ଼େ କୁଟିଳ ଯେ ଅଟଇ ସ୍ୱାମି ତୋହର ହୃଦୟା ।
କୁହତ ଚତୁର ଆପଣେ ସବୁ କରୁ ଭିଆଣ,
ଜନ୍ମବ ମାୟାରେ ହେଲୁ ସୀତା ନେଲା ରାବଣ ।
ତୁ ସ୍ୱାମି ଈଶ୍ୱର ଧରିଣ ଦେବ ପରହିଁ ମଣୁ,
କାହିଁକି ନରକ ମଧ୍ୟରେ ଭକ୍ତମାନଙ୍କୁ ଗଣୁ ।
ତୋପଦ ପ୍ରଭୁ ଯେ ପାଇଲେ ମୋକ୍ଷ କପାଇଁ ଭୟ ?
ଯମଦଣ୍ଡ ଖଣ୍ଡକରିବ ଯେଣୁ ତୁମ୍ଭେ ସଦୟ ।
ଶବରୁଣୀ ଗିରି ମଧ୍ୟରେ ଯଣ କେତପକାଲା,
ଉଚ୍ଛିଷ୍ଟ କରିଣ ବୁଡ଼କୁ ଅଣି ସମର୍ପି ଦେଲା ।
ତାହା ଅଙ୍ଗୀକାର କରିଣ କଲ ଅଟେ ଭୋଜନ,
ଲଭୁ ଦେଇ ଛାଡ଼ି ଚଳିଲା ସେହୁ ବୈକୁଣ୍ଠ ସ୍ଥାନ ।
ଏତେକ ଗୁଣ ଅଛଇ ହେ ତୁମ୍ଭେ ଭକ୍ତ ବତ୍ସଳ,
ଏଥୀ ଜଣ ଭକ୍ତେ କାଟନ୍ତି ଭବସାଗର ଜାଳ ।
ଅଜାମିଳ ନାମେ ପାପିଏ ଥିଲା ନାମକୁ ଧରି,
ଦେହ ଛାଡ଼ି ଅନ୍ତେ ଚଳିଲା ସେହ ବୈକୁଣ୍ଠପୁରୀ ।
ପୂର୍ବେ ଷୋଳସହସ୍ର ଗୁଣିଏ ଗୋପ ଅଙ୍ଗମ୍ନି ଥିଲେ,
ତୋର ସମରୂପ ଦେଖିଣ ସେହୁ ମୋହ ହୋଇଲେ ।

ପ୍ରସନ୍ନେ ଧ୍ରୁବର ତାହାଙ୍କୁ ଦେଲହେ ବନମାଳୀ,
ତୋ ସଙ୍ଗେ ଗୋପେ ସ୍ତ୍ରୀସହୋଇ ଥିଲେ ସେହୁସେ କେଳ ।
ଯେଣୁ ହୃଦଘଟେ ବସୁରେ ତାହା ଜାଣ ଅପଣ,
ଏଣୁ ସର୍ବଜାଣ ବୋଲିଣ କହେ ବେଦପୁରାଣ ।
ସାଧୁଚରଣ ଯେଉଁବାଇ ଜଳୁ ନାହିଁ ତ ଦୟା,
କ୍ଷଣକୁ କ୍ଷଣକେ ଘୋଟଇ ମୋତେ ଏ ଭବ ମାୟା ।
ଏଭ ରୂପେ କଳକାଳକୁ କାଟଯିବ ଗୋସାଇଁ,
ଏମନ୍ତ ହୃଦରେ ଭାବଇ ଅହର୍ନିଶି ଯେ ମୁହିଁ ।
ଭକତଙ୍କ ଠାରେ କରୁଣା କରୁଅଛ ମୁରାରି,
ପଦ୍ମନାଭ ଛଳେ ସ୍ତମ୍ଭରୁ ହେଲ ନର କେଶରୀ ।
ସତ୍ୟଯୁଗେ ଅମ୍ବରୀଷ ଯେ ଅରତରେ ଡାକିଲା
ବ୍ରହ୍ମଶାପ ତାର ଦେହରୁ ଦେଖି ଭୟେ ଘୁଞ୍ଚିଲା ।
ତୁମ୍ଭର ମହିମା ଏମନ୍ତ ଶୁଣି ଅଛିଯେ ମୁହିଁ,
ଏଣୁକରି ପାଦପଦ୍ମମନେ ତୋର ଆଶା କରଇ ।
ମୃଶୁଣି ଅରତ ବନସ୍ତେ ଫେଡ଼ଅଛ ଅପଣ,
ପରୀକ୍ଷକୁ ଗର୍ଭେ ରଖିଲ ପରୀକ୍ଷାରେ କାରଣ ।
ଏମନ୍ତ ମହିମା ତୁମ୍ଭର ଜାଣିଅଛି ନିରତ,
ସାଧୁଚରଣ ଦାସଙ୍କୁ ଯେ ରଖି ନପାର ସତ୍ୟ ।
ମୁଁ ଏବେ ତୁମ୍ଭଙ୍କ ଭଜଣ ହୃଦେ ଧରି ନପାରୁ,
ତୁମ୍ଭେ ତ କରୁଣା ସାଗର ଅଟ ଲକ୍ଷ୍ମୀ ବିହାରୀ ।
ନୃସିଂହ ନାମ ତୁମ୍ଭର ଯେ ପ୍ରଭୁ ଅଟଇ ତେଜ,
ଏଣୁକରି ସେହି ନାମକୁ କହୁଅଛି ମୁଁ ଆଜ ।

ଶ୍ରୀ କରୁଣେ ଦୁଷ୍ଟ ମାରଣ ରଖିଅଛ ଭୃତ୍ୟକୁ,
ପତିତମୁହିଁ କରୁନାହଁ ହେ ଦେଖି କଳିକାଳକୁ ।
ଅଶ୍ର କରିଅଛି ତୁମ୍ଭଙ୍କୁ ଅନ୍ୟ ଦେବ ନସେବି,
ଯପ ତୀର୍ଥ ବ୍ରତ ଛାଡିଲି ତୁମ୍ଭ ନାମକୁ ଭାବି ।
ଏଣୁକରି ଅବାକରୁଣା କରୁନାହଁ ଗୋସାଇଁ,
ମାୟାଜାଲଭାବରେ ଫସାଉ କେତେ ଡରିବି ମୁହିଁ ।
ହେତୁ ମୋର ବୁଢ଼ ଗଲାହେ ତୁମ୍ଭେ ନୋହୁଛ ସାହା,
କେତେମନ୍ତ ଭକତ ବତ୍ସଳ ତୁମ୍ଭେ ହେ. ଚକ୍ରବାହା ।
ତୁମ୍ଭ ବିନା ମୋର ମନକୁ କେହି ରୁଚଇ ନାହିଁ,
ମୋକ୍ଷସ୍ୱାମି ତୁମ୍ଭେ ଅଟହେ ମୁହିଁ ଏହା ଜାଣଇଁ ।
ତୁମ୍ଭେ ବା ବୋଲିବ ମାୟାରେ ମୋତେ କରୁ ଜଣାଣ,
ଅନ୍ତର୍ଗତ କଥା ଜାଣହେ ଅନ୍ତର୍ଯାମି ଆପଣ ।
ଅନ୍ୟ ଦେବତା ମୋହରହେ ଉପାସନାତ ନାହିଁ,
ବ୍ରତ ତୀର୍ଥରେ ମୋ ମନହେ କେବେ ବଳଇ ନାହିଁ ।
ତୁମ୍ଭଙ୍କୁ ମୁହିଁ ଯେ ପାଇଲେ ଶର୍ମା ଅନଳୁ ଲକ୍ଷ୍ମ,
ଦେବତା ମାନଙ୍କ ମୁକୁନ୍ଦ ତୁମ୍ଭେ ଦେବାଧିଗସ୍ତୁ ।
କ୍ଷୀଣରେ ଚିତ୍ତ ନ ଚଳାଇ ଖଣ୍ଡ ଚକ୍ଷେଯେ ଅନ୍ଧ,
କେବଳ କମଳ ଚରଣେ ମନ ଥିବଟେଯ ବନ୍ଧ ।
ପଦ୍ମଚରଣ ମକରନ୍ଦେ ମନ ହେବ ଭ୍ରମର,
ମନ୍ଦ ମନ୍ଦ ପାନ କରିବ ଏହି ବାଞ୍ଛା ମୋହର ।
କାହିଁ କେବେ କାଳ ପାଣିଛି କାଳ ଜଟିଳି ମୋତେ,
ଶ୍ରୀ କରୁଣେ ପାର କରିବ ଅଙ୍ଗ ହେଉଁ ମୃତଡେ ।

ଜୀବ ଥାଉଁ ଥାଉଁ ମନକୁ ମୁହିଁ ଦେଉ ଅଛଇ,
ସାଧୁ ଚରଣ ଦାସ କହେ ଅନ୍ୟ ମୋହର ନାହିଁ ।
ଯାହାର ଘରଣୀ କମଳା ତାଙ୍କୁ ଅପୂର୍ବ କଷ,
ବ୍ରହ୍ମା ରୁଦ୍ର ତୁମ୍ଭ ସ୍ମରଣେ ହୋଇ ଅଛନ୍ତି ଦାସ ।
ନାରଦେ ତୁମ୍ଭଙ୍କୁ ପ୍ରସନ୍ନ କରିବାଇଁ ଗୋସାଇଁ,
କେବଳ ମନକୁ ଦେଲଇଁ ନିଜ କମଳା ସାଇଁ ।
ଗୋପ ସ୍ତ୍ରୀଏ ତୁମ୍ଭ ମନକୁ ନେଇ ଅଛନ୍ତି ହରି,
ଏଣୁକରି ମୋର ଭରସା ବଳଅଛି ମୁରାରି ।
ଧ୍ରୁବଙ୍କୁ ପ୍ରସନ୍ନ ହୋଇଣ ରଖିଅଛ ଆପଣ,
ଚଉଦ ଭୁବନ ଉପରେ ତାଙ୍କୁ ଦେଲଟି ସ୍ଥାନ ।
ଅହଲ୍ୟା ପାଷାଣୁ ତରିଲ୍ୟ କେଉଁ ତପସେ କହ,
ପଶୁରୂପ ଭଙ୍ଗ ଭଞ୍ଜିଲ ପୁଣିହେ ଚକାଡୋଳା ।
ଟାଣ ଦେଖିଲେଭଙ୍ଗ ତୁମ୍ଭେ ଦୀନ ଦେଖିଲେ ଦୟା,
ମୁହିଁ ଦୀନ ଜନ ଅଟଇ କ୍ଷମା କରୁଛ ମାୟା ।
ହେଲାକଲେ ହେଲା ବୁଡ଼ିବ ମୋର ଶୁଣ ଗୋସାଇଁ
ସାଧୁଚରଣଯେ ଭାବଇ କ୍ଷମା ଦୟା ନୁହଇ ?
ମୁହିଁତ ତୁମ୍ଭଙ୍କୁ ଧରିଲି ଅନ୍ୟ ଆଶା ନକରି ,
ନ ଛାଡ଼ିବେ ପାରିକରିବ କହ ଏ ଭବ ବାରି ।
ହିରଣ୍ୟ ଗର୍ଭକୁ ରଖିଲ ସୃଷ୍ଟିଯଷ୍ଟି କିଛି ତହିଁ,
ଦଧିଚି ମାୟାରେ ଭୁଲିଲେ ପଡ଼ି ପାର୍ବତୀ ସାଇଁ ।
ବଡ଼କୁ ବଡ଼ କଷଣ ହେ ଲଘୁ ଲଘୁ ପ୍ରମାଣ,
ତୁମ୍ଭେ ବଡ଼ଲୋକ ବୋଲିଣ ମୁହିଁ କଲି ଜଣାଣ ।

ସୁବର୍ଣ୍ଣ ବଧିର କଲଣ ଅବା ଖଳକୁ ମୂଢ,
ମୋହର ଜଣାଣ ତୁମ୍ଭର ଶ୍ରବଣେନ୍ଦ୍ରିୟ ନଭେଦ ।
ଚାତକର ନାସ କରବ ଏତ ନୁହେ ଉଚତ,
ବିଶ୍ୱାସେ ଅବଶ୍ୟ ପୁଣ ଭରିବକି ଅନନ୍ତ ?
ସାଧୁ ଚରଣ ଦାସ ପ୍ରଭୁ ତୋତେ କରନ୍ତି ଧ୍ୟାନ,
ଧ୍ୟାନକୁ ଅକଳ କରବ କହ ଜଗନ୍ମୋହନ ।
ତୁମ୍ଭେତ ପରମ ପୁରୁଷ ସବୁ ପରହି ନାହିଁ,
ଶ୍ରୀବତ୍ସ ବ୍ରାହ୍ମଣ ପଦର ବହୁ ଅଛ ଗୋସାଇଁ ।
ବିଦୁର ଭକତ ଭୋଜନ ତାର ଘରେ ଭୋଜନ,
ମାର୍କଣ୍ଡ ଭକ୍ତ ଅମର ହୋଇ ଅଛନ୍ତି ଜାଣ ।
ଗୁରୁପୁତ୍ର ଅଣିଦ୍ଦବତ ଦେଇ ଗୁରୁ ବୋଧିଲ,
ଜନକ ଜନନୀ ଉଦ୍ଧାର ହେଲେ କଂସ ବଧିଲ ।
ଜଗସନ୍ଧକୁ ବଧକର ନୃପ କଦମ୍ବ ରଖି,
ମୁହିଁ ଅଣାକର ଶର୍ମାଇଁ ହୋଇ ଅଛ ନପ୍ୟାଖି ।
କରମୋତେ ପ୍ରଭୁ କାରଣ ମୁହିଁ ଗଲି ଶରଣ,
ଶରଣ ତାରଣ ବୋଲଣ ମୂହିଁ କଲ ଜଣାଣ ।
ଭବସିନ୍ଧୁ ମଧ୍ୟେ ମୋହେଲା ଭ୍ରମୁ ଅଛ ମୁରାର,
ମୋତେ ଧାରକର ନେବହେ ତାରେ ନନ୍ଦକେଶରୀ ।
ଭକତବତ ବର ଦ୍ୱାରକେ ଅତ ଅଲବ ହୋଇ,
ବକାଶୁରମାର ରଖିଲ କୁବେ କମଳା ସାଇଁ ।
ପ୍ରଳୟ କାଳେ ସୁମରଳି ଯାତା ହୃଦରେ ପୁଣ,
ବେଦ ଉଦ୍ଧରଲ ଅପଣ ପୂର୍ବେ ହୋଇଣ ମୀନ ।

କୂର୍ମରୂପ ଧରି ମନ୍ଦର ଟେକି ଅଛ ଗୋସାଇଁ,
ବରାହ ମୂରତି ଧରିଣ ଥିଲ ଦନ୍ତରେ ବହି ।
ନରସିଂହ ରୂପ ପ୍ରକାଶି ହିରଣ୍ୟକୁ ବଦାଇ,
ପ୍ରହଲ୍ଲାଦକୁ ଯେ ଉଦ୍ଧାର ଅଛ ନରକେଶରୀ ।
ବାମନ ରୂପେ ବଳଙ୍କୁ ଯେ ଛପି ଅଛ ଆପଣ,
ପର୍ଶୁରାମ ରୂପ ଧରଣ ମାର ସହସ୍ରାର୍ଜୁନ ।
ରାମଚନ୍ଦ୍ର ରୂପ ଧରଣ ରାବଣକୁ ଛେଦିଲ,
କୃଷ୍ଣରୂପେ କଂଶ ଧ୍ୱଂଶିଲ ତୁମ୍ଭେହେ ଅଦ୍ଭୁତମୂଳ ।
ଦ୍ରୌପଦୀଙ୍କ ମାନ ପେଢ଼ିଲ ଦେଲ କୋଟିବସନ,
ମୁହିଁ ଜଣାଉଛି ସ୍ୱାମୀରେ ମୋର ଦୁଃଖ ଜଣ ଶୁଣ ।
ଜଗନ୍ନାଥ ରୂପ ଧରଣ ନୀଳକନ୍ଦରେ ଅଛ,
ଦର୍ଶନ ଦେଇଣ ପାପିଙ୍କି କରୁଅଛ ଯେ ମୋକ୍ଷ ।
ମୁହିଁ ବଡ଼ ପାପୀ ହୋଇଛି ମୋତେ ତାର କାରଣ,
ସାଧୁଚରଣ ଦାସ କହେ ରଖ ରମାରମଣ ।
ତୁମ୍ଭେ ଯେ ଅଦ୍ଭୁତ ସ୍ୱରୂପେ ଚରାଚର ବସ୍ତୁ,
ଜଳରୁ ଶୀତଳ ଅଗ୍ନିରୁ ଅଟେ ତେଜୋମୟ ।
କୋଟିକଳ୍ପ ଅଗ୍ନି ତେଜ ଯେ ରୂପକୁ ନୁହେଁ ସମ,
କୋଟି ସୂର୍ଯ୍ୟତେଜ କୁଣ୍ଡଳ କର୍ଣ୍ଣେ ଦିବ୍ୟତେଜ ହର ।
ଚନ୍ଦ୍ରର ପ୍ରତାପ ଉପମା କସ ଦେବରେ ମୁହିଁ,
କୋଟି ୨ ସୂର୍ଯ୍ୟତେଜକୁ କାଳେ ସମନୁହଇ ।
ଏହାଙ୍କ ତେଜ ତୁମ୍ଭର ହେ କୃପା ଅଟେ ମୁରାରୀ,
ଏହାଙ୍କ ତେଜରେ ନଦୀ ତମ ହୁଅଇ ହର ।

ମୋ ପ୍ରତି ଏମନ୍ତ ଯୋଗ୍ୟ ତେଲ କର ପସାର,
ନିଳ ହୋଇ ସେହ୍ନ ଯିବନ୍ତି ତୁମ୍ଭେ କୃପାସାଗର ।
ମୁହିଁ ତୁମ୍ଭ ପାଦେ ଶରଣ ପଶିଅଛନ୍ତି ଜାଣ,
ସାଧୁ ଚରଣକୁ ଭାରଣ କର ଲକ୍ଷ୍ମୀରମଣ ।
ମୁରାରି ମୁକୁନ୍ଦ ମାଧବ କୃପାଜଳଧି ହରି,
ଭୃତ୍ୟର ଅରତ ନସହ ଶୁଣ ନରକେଶରୀ ।
ଭଗବନ୍ତ ନାମେ ଭକତ ଚନ୍ତାକଲେ ତୁମ୍ଭଙ୍କ,
ଧୀବରଣଣ୍ଡୁ ହୋଇ କର ଝଗୋଳନ୍ତି ତାହାଙ୍କୁ ।
ନାବ ଘେନି କର ତସ୍କର ଯମୁନ ତୀରେ ଲଗାଇ,
ତାର ଦୁଷ୍ଟପଣ ଦେଖିଣ ଭୃତ୍ୟ ଚନ୍ତାକରଇ ।
ରଘୁନନ୍ଦନ ନାମ ହୃଦେ ସେହ୍ନଲସ୍ତ ଯେ କଲ୍ଲ,
ଶ୍ରୀରାମ ରୂପେ ତେଜରେ ତାଙ୍କୁ ଦର୍ଶନ ଦେଲ୍ଲ ।
ଦେଖି ଭୟ କରି ଧୀବର ଗଲ୍ଲ ଅଲଗା ହୋଇ,
ଗତନ ଦୁଃଖୁଁ ଭୃତ୍ୟକୁ ଯେ ରଖିଅଛ ଗୋସାଇଁ ।
ଏତେକ ଗୁଣ ଅଛଇ ହେ ତୁମ୍ଭେ ଭକ୍ତ ଝଙ୍କର,
ଭକ୍ତ ଜଦମ୍ଭକୁ ଅନ୍ତର ପ୍ରଭୁ କେବେ ନକର ।
କଳିଯୁଗେ ଭକ୍ତ ମାନଙ୍କୁ ପ୍ରଭୁ ହୁଅଯେ ସାହା,
ଯୁଗକୁ ଯୁଗଯେ ଅନ୍ତର ନକର ଚକ୍ରବାହା ।
ବଳରାମ ଦାସ ବୋଲଣ ସୋମନାଥ ତନୟ,
ବନ୍ଦଦଣ୍ଡ ତାଙ୍କୁ ରଖିଛ ପ୍ରଭୁ ଦେବାଧିରାୟ ।
ଜଡ଼ା ଗୁରୁବେଦ କହନ୍ତି ଯେଣୁ କୃପା ହୋଇଲ୍ଲ,
ଭକତ ଜନଙ୍କ ବାନ୍ଧବ ପ୍ରଭୁ ହେ ଚକାଡ଼ୋଳା ।

ଏତେକ ମୋହଠାରେ କରୁଣା ବର୍ଣ୍ଣନାହିଁତ ଅଛି,
ସାଧୁଚରଣ ଦାସଙ୍କୁଯେ ପ୍ରଭୁ ନପାର ରଖି ।
ପଣ୍ଡାବସଦେବପୁର ଗ୍ରାମେ ହେଲ ଜନମ,
ହେଉ ହେଲନ୍ତୁ ତୁମ୍ଭଙ୍କୁ ସ୍ମରୁ ନାହିଁ ମୋମନ ।
ତହିଁଣ ମାନ୍ୟା ଜ କରୁଛ ମାୟାଧର ଗୋସାଇଁ,
ଲକ୍ଷ୍ମୀ ନୃସିଂହ ନାମ ବିନୁ ଅନ୍ୟ ମୋହର ନାହିଁ ।
କେବଳ ତୁମ୍ଭଙ୍କୁ ଭଜଇ ଅନ୍ୟ ନଯେନ ଚିତ୍ତେ,
ଇନ୍ଦ୍ର ବ୍ରହ୍ମ ପଦ ତୁଚ୍ଛରେ ନବାଞ୍ଛଇ ସତତେ ।
ଗଙ୍ଗାଦି ଯେତେ ତୀର୍ଥ ବ୍ରତ ଖ୍ୟାତ ଅଟଇ କ୍ଷିତି,
ତୁମ୍ଭବିନୁ ଅନ୍ୟକୁ ମୋର ନବଳଇ ପିରତି ।
ତୁମ୍ଭେ ଅନ୍ତର୍ଯାମୀ ଜାଣତ ଅନ୍ତର ନୁହେ ସିଦ୍ଧାନ୍ତ,
ଏକଥା ତତ୍ତ୍ୱଟି ଅଟଇ ଶୁଣ କମଳା କାନ୍ତ ।
କେବଳ ଶ୍ରୀରାମ ଚରଣେ ମୋର ଚିତ୍ତ ଭ୍ରମଇ,
ଦେବଚରଣ ମକରନ୍ଦ ପାନେ ଭ୍ରମର ହୋଇ ।
ଜାନକୀ କାନ୍ତର ରୂପକୁ ଚିନ୍ତୁ ଅଛି ମୋଚିତ୍ତ,
ନବ ଜଳଧର ଶ୍ୟାମଳ ବର୍ଣ୍ଣ ଅଟଇ କାନ୍ତ ।
ଏହି ରୂପ ମୋର ନୟନେ ନିରବଧି ଝରଇ,
କେମନ୍ତେ ଅନ୍ୟକୁ ଶରଧା ବଳିବଟି ଗୋସାଇଁ ।
ସାଧୁଚରଣ ଦାସ ନିଶ୍ଚେ ଅଟଇ ତୁମ୍ଭ ଦାସ,
ଦାସଠାରେ ଦୋଷ ନଧର ଅହେ ଲକ୍ଷ୍ମୀ ବିଳାସ ।
ଅଷ୍ଟାଦଶ ଚିହ୍ନ ଶ୍ରୀପଦେ କରୁଅଛି ଭୂଷଣ,
କମଳ ଅଙ୍କୁଶ ଯବ ମଧ୍ୟେ ଧ୍ୱଜ ରଥାଙ୍ଗ ଶଙ୍ଖ ।

ରେଖା ସ୍ୱସ୍ତିକ ଅଷ୍ଟକୋଣ ବଜ୍ର ଦଣ୍ଡ ପଦ୍ମବର,
ଶଙ୍ଖ ତ୍ରିକୋଣ ଧନୁ ନଭ ମତ୍ସ୍ୟ ବିନ୍ଦୁ ଉକର ।
ଅର୍ଦ୍ଧଚନ୍ଦ୍ରଚୟ ଗୋଷ୍ପଦହିଁ କଳସ ବାମପାଦ,
ଏହାଙ୍କୁ ଚିନ୍ତିଲେ ନଥାଇ ଶତ୍ରୁରଷ୍ଟି ପ୍ରମାଦ ।
ସାଧୁଚରଣ ଦାସ ଧ୍ୟାନ ଏହି ଚରଣ ମୂଳେ,
ଏଥିରୁ ଅନନ୍ୟେ ନଦୀଯେ ଜନ୍ମଅଛି ନିର୍ମଳେ ।
ଭୂତମୂତ ପୁରୁଷ ଉତ୍ତମ ସର୍ବଜାଣ ମୁରାରି,
ଅଷ୍ଟାଦଶ ଚିହ୍ନ ଚରଣ ହୃଦୟ ଅଛନ୍ତି ଧରି ।
ତ୍ରିତାପ ମୋହର ନାଶିବ ଏହି ଜଣାଣ ମୋର,
ଭୂତ ଭବିଷ୍ୟତ ବର୍ତ୍ତମାନେ ଥିବ ଯେତେ କମଳ ।
ଏହି ବାଞ୍ଛା ବିନା ମୋହର ଅନ୍ୟ ବାଞ୍ଛା ଯେ ନାହିଁ,
ସାଧୁଚରଣ ଦାସ ପ୍ରଭୁ ଏହା ମନାଇ ଥାଇ ।
ଅଷ୍ଟାଦଶ ଚିହ୍ନଗ୍ରୀବରେ ବହିଅଛ ଗୋସାଇଁ,
ଗଙ୍ଗା ଉତ୍ପତ୍ତି କରଣେ ଯେ ରହିଲେ ବିନ୍ଦୁ ହୋଇ ।
ପଦ୍ମକୁ ମୂର୍ଦ୍ଧେ ଦେଖି ଧରି ପାଦେ କଲ ଭୂଷଣ,
ଗଜଭକ୍ତ ଦେଖି ଅଙ୍କୁଶ କରିଅଛ ଧାରଣ ।
ଜମୁନା ଜଳକୁ ଚାହିଁଲ ଯବ ରୂପ ରହିଲା,
ପତିତ ତାରଣ ପତାକା ବହିଲ ଚକାଡୋଳା ।
ଶିଶୁପାଳ ବଧ କାଳେ ଯେ ଚକ୍ର ବର ମାଗିଲା,
ଚରଣେ ଲାଗିଣ ରହିଯେ ଭକ୍ତ ସେହି ପାଇଲା ।
ଊର୍ଦ୍ଧ୍ୱରେତାମାନେ ତପସ୍ୟା କରୁଥିଲେ ଯେ ବନେ,
ତାହାଙ୍କର ଗତି ଦେଖିଲ ଊର୍ଦ୍ଧ୍ୱ ରେଖା ଯତନେ ।

ଏବେ ମୋହଠାରେ କରୁଣା ଦର୍ଶାଉନାହିଁତ କିଛି,
ସାଧୁଚରଣ ଦାସଙ୍କୁହେ ତୁଚ୍ଛ ନଦାଉ ରଖି ।
ପଞ୍ଚବାସଦେବପୁର ଗ୍ରାମେ ହେଲି ଜନମ,
ହେଉ ହେଲାଦିନୁ ତୁମ୍ଭଙ୍କୁ ଛାଡୁ ନାହିଁ ମୋମନ ।
ତହିଁକି ମାୟା ନ କରୁଛ ମାୟାଧର ଗୋସାଇଁ,
ଲକ୍ଷ୍ମୀ ନୃସିଂହ ନାମ ବିନୁ ଅନ୍ୟ ମୋହର ନାହିଁ ।
କେବଳ ତୁମ୍ଭଙ୍କୁ ଭଜଇ ଅନ୍ୟ ନସେବେ ଚିତ୍ତେ,
ଇନ୍ଦ୍ର ବ୍ରହ୍ମ ପଦ ହୃଦରେ ନବାଞ୍ଛଇ ସତତେ ।
ଗଙ୍ଗାଦି ଯେତେ ତୀର୍ଥ ବ୍ରତ ଖ୍ୟାତ ଅଟଇ ଗୀତ,
ତୁମ୍ଭବିନୁ ଅନ୍ୟକୁ ମୋର ନବଳଇ ଚିତ୍ତ ।
ତୁମ୍ଭେ ଅନ୍ତର୍ଯାମୀ ଜାଣିତ କି ବା ନୁହେ ସିଦ୍ଧାନ୍ତ,
ଏକଥା ତତ୍ତ୍ୱଟି ଅଟଇ ଶୁଣ କମଳା କାନ୍ତ ।
କେବଳ ଶ୍ରୀରାମ ଚରଣେ ମୋର ଚିତ୍ତ ଭ୍ରମଇ,
ତବଚରଣ ମକରନ୍ଦ ପିଏ ଭ୍ରମର ହୋଇ ।
ଜାନକୀ କାନ୍ତର ରୂପକୁ ଚିନ୍ତୁ ଅଛି ମୋଚିତ୍ତ,
ନବ ଜଳଧର ଶ୍ୟାମଳ ବର୍ଣ୍ଣ ଅଟଇ ଶାନ୍ତ ।
ଏହି ରୂପ ମୋର ନୟନେ ନିରବଧି ରହଇ,
କେମନ୍ତେ ଅନ୍ୟକୁ ଶରଧା କରିବଟି ଗୋସାଇଁ ।
ସାଧୁଚରଣ ଦାସ ନିଶ୍ଚେ ଅଟଇ ତୁମ୍ଭ ଦାସ,
ଦାସଠାରେ ଦୋଷ ନଧର ଅହେ ଲକ୍ଷ୍ମୀ ବିଳାସ ।
ଅଷ୍ଟଦଶ ଚିହ୍ନ ଶ୍ରୀପଦେ ଭରଅଛି ଭୂଷଣ,
କମଳ ଅଙ୍କୁଶ ଯବରେଖ ଧ୍ୱଜ ରଥାଙ୍ଗ ଚିହ୍ନ ।

ରେଖା ସ୍ୱସ୍ତିକ ଅଷ୍ଟକୋଣ ବଜ୍ର ଦଣ୍ଡ ପଦ୍ମବର,
ଶଙ୍ଖ ତ୍ରିକୋଣ ଧନୁ ନଭ ମତ୍ସ୍ୟ ବିନ୍ଦୁ ଜକାର ।
ଅର୍ଦ୍ଧଚନ୍ଦ୍ରଚୟ ଗୋଷ୍ପଦହିଁ କଳସ ବାମପାଦ,
ଏହାଙ୍କୁ ଚିନ୍ତିଲେ ନଥାଇ ଶତ୍ରୁରେହି ପ୍ରମାଦ ।
ସାଧୁଚରଣ ଦାସ ଧ୍ୟାନ ଏହି ଚରଣ ମୂଳେ,
ଏଥିରୁ ଆନନ୍ଦେ ଦଦଶେ କଲ୍ପଅଛି ନିର୍ମଳେ ।
ଭୂଟମୂତ ପୁରୁଷ ଉତ୍ତମ ସର୍ବଜାଣ ଗୁରୁବର,
ଅଷ୍ଟାଦଶ ଚିହ୍ନ ଚରଣ ହୃଦଧ ଅଛନ୍ତି ଧର ।
ତ୍ରିତାପ ମୋହର ନାଶିବ ଏହି ଜଣାଣ ମୋର,
ଭୂତ ଭବିଷ୍ୟତ ବର୍ତ୍ତମାନେ ଥିବ ଯେତେ କମଳ ।
ଏହିବାଞ୍ଛା ବିନା ମୋହର ଅନ୍ୟ ବାଞ୍ଛାଟେ ନାହିଁ,
ସାଧୁଚରଣ ଦାସ ପ୍ରଭୁ ଏହା ମନାଇ ଥାଇ ।
ଅଷ୍ଟାଦଶ ଚିହ୍ନଭିତରେ ବହିଅଛ ଗୋସାଇଁ,
ଭଗାଭକତ କରଣେଯେ ବହିଲେ ବିନ୍ଦୁ ହୋଇ ।
ପଦ୍ମକୁ ମୃଷ୍ଟ ଦେଖି ହରି ପାଦେ କଲ ଭୂଷଣ,
ଗଜଭକ୍ତ ଦେଖି ଅଙ୍କୁଶ କରିଅଛ ଧାରଣ ।
ଜମୁନା ଜଳକୁ ତାରିଲ ଯବ ରୂପେ ରହିଲ,
ପତିତ ତାରଣ ପତାକା ବହିଲ ଚକାଡ଼ିଲା ।
ଶିଶୁପାଳ ବଧ କାଳେଯେ ଚକ୍ର ବର ମାଗିଲ,
ଚରଣେ ଲାଗିଣ ରହିଯେ ଭକ୍ତ ସେହୁ ପାଇଲ ।
ଊର୍ଦ୍ଧ୍ୱରେତାମାନେ ତପସ୍ୟା କରୁଥିଲେଯେ ବନେ,
ତାହାଙ୍କର ଗତି ଦେଖିଲ ଊର୍ଦ୍ଧ୍ୱ ରେଖା ଧରନେ ।

ନରଦେବ ମାଗି ସ୍ୱସ୍ତିକ ହୋଇ ପାଦେ ରହିଲା,
ଅଷ୍ଟକୋଣ ବୃନ୍ଦାବନରେ ହୋଇ ଭକ୍ତି ପାଇଲେ ।
ଇନ୍ଦ୍ର ଭକ୍ତିରେ ବଜ୍ରଚିହ୍ନ ରଖିଅଛ ମୁରାରି,
ଶଙ୍ଖାସୁରକୁ ମାରଣେ ଯେ ଶଙ୍ଖ ଚିହ୍ନ ଉଛଇ ।
ଦୈତ୍ୟ ନିର୍ମ୍ମଳ ଭକ୍ତିଦେଖି ପାଦେ କଳିଭୂଷଣ,
ତ୍ରିକୋଣ ଧରଣୀ ନେଇଛନ୍ତି ଦେବ ବାଧବେ ଜାଣ ।
ଶିବ ଧନୁକୁ ଭାଙ୍ଗିବାରେ ସୀତା ପ୍ରେମରେ ହରି,
ଧନୁକୁ ପାଦରେ ବହିଲ ତାର ଭକ୍ତ ବିଶ୍ୱର ।
ବଳାଇ ଗୃହିବା ସମୟେ ଅଙ୍କୁଶ ବରମାଗି,
ଚରଣେ ତାହାଙ୍କୁ ଧରିଲ ଅଟେ ଶୁଣ ସାରଙ୍ଗୀ ।
ପ୍ରଳୟ କାଳେ ସତ୍ୟବ୍ରତ ଭକ୍ତିରେ ଧରିମୀନ,
ଗୋପୀଚନ୍ଦ୍ର ମୁଖ ଦେଖିଣ ଅର୍ଦ୍ଧଚନ୍ଦ୍ର ଧାରଣ ।
କାମଧେନୁର ଆହ୍ଲାଦେ ଗୋଷ୍ପଦ ପାଦେ ବନ୍ଧ,
ଅମୃତ ଭାଣ୍ଡ ଶତ୍ରୁଧାରେ ପଦ୍ମବନ୍ଧ ଗୋସାଇଁ ।
ଏହିରୂପେ ଅଷ୍ଟାଦଶରେ ଚିହ୍ନ କଲ ଧାରଣ,
ମାଧଇ ପ୍ରେମରେ ଭକତ ଦାସ ସାଧୁଚରଣ ।
ଉଜ୍ଜ୍ୱଳ ପର୍ବତ ସମାନ ଚାନ୍ଦ ସାଗର ଜଳ,
ମୂର କଲ୍ପତରୁ ଲେଖନ ଯେବେ ହେବ ବଗ୍ରର ।
ପଞ୍ଚାଶ କୋଟି ବସୁନ୍ଧରା ଯେ ହୋଇବ ଯେବେ,
ଶିବ ବରଣ୍ଣ ସାରଦାଯେ ଶେଷ ଲେଖି ବସିବେ ।
ସବୁ ବିଷୟ ଛାଡ଼ିକରି ତୁମ୍ଭ ନାମ ମାଗୁଣି,
କଲ୍ପ କଲ୍ପ ହୋଇ ବସିଲେ ପାରିନୋହିବ ଜାଣି ।

ଅନନ୍ତ ମହିମା ତୁମ୍ଭର ଅନ୍ତ କହିବ କେହୁ,
ମୁହିଁ କୀଟପିଙ୍ଗା ମାନବ ଯଶ କହିବ ପ୍ରଭୁ ?
ତୁମ୍ଭେ କୃପା କଲେ ମୋହର ଜୀବ ହେବ କୃତାର୍ଥ,
ଏହି ପ୍ରସଙ୍ଗ ମୋହଠାରେ ଶୁଣହେ ଜଗନ୍ନାଥ ।
କେବଳ ତୁମ୍ଭ ଚରଣରେ ଚିତ୍ତ ରହୁ ମୋହର,
ସାଧୁଚରଣ ଦାସକୁଯେ ପ୍ରଭୁ ତାରେ ଉଦ୍ଧର ।
ମୋକ୍ଷପ୍ରାପ୍ତ ଭୃତ୍ୟ ଅନେକ ସଂଖ୍ୟାକର ନୁହଇ,
ତୁମ୍ଭଙ୍କୁ ବେଢିଣ ସେବାଯେ କରୁଛନ୍ତି ଗୋସାଇଁ ।
ତୁମ୍ଭପରି ପ୍ରଭୁ ଖୋଜିଏ କାହିଁ ଅଛି ସଂସାର ?
ଖୋଜିକରି ଦେଖୁନାହିଁ ଯେ ଯାର ଶଙ୍କର ଶିବ ।
ବ୍ରହ୍ମା ଇନ୍ଦ୍ର ଚନ୍ଦ୍ର କୁବେର ଭାନୁ ଅଗ୍ନି ସମୀର,
ତେତିଶିକୋଟି ଦେବଗଣ ଆଉ ଏତନ୍ନପର ।
ଯାହାର ଚରଣେ ଶରଣ ପଶିଛନ୍ତି ଗୋସାଇଁ,
ତହିଁ ବଡକାହିଁ ଖୋଜିବ ଏହି ଦେହବଗ୍ରାହୀ ।
ବନ୍ଧ ହୋଇଲେ ତୁମ୍ଭେ ବନ୍ଧ ସବୁଠାରେଯେ ମୂଳ,
ଏଣୁକରି ଗାଢ଼େ ଧରିଛି ଶୁଣ ହେଅଡମୂଳ ।
ମହିମାମେରୁକୁ ଧଇଲେ କ୍ଷୁଦ୍ର ଚୋଜ ଗଣି,
ଅମୃତସାଗର ପାଇଲେ କରିବ କି କୂପପାଣି ।
ଅନ୍ୟ ଦେବଙ୍କୁ ଅସେଧ କଲେ ତୁମ୍ଭ ଶରଣ,
ତୁମ୍ଭ ଅପରାଧ ହୋଇଲେ କାହିଁ ହେବ ତାରଣ ।
ଫିହିଭସ୍ମ ହେଲେ କାନନେ ନଗ୍ର ହୁଅଇ ରହି,
ନରଭସ୍ମ ନରେ ଧାଇଲେ ପୁଣି ବନକୁ ଯାଇ ।

ନରସିଂହଙ୍କ ଅନୁଗ୍ରହେ ପାବ ନାହିଁ ବିପୁର,
ଏମନ୍ତ ପ୍ରଭୁ ଚରଣକୁ ସେବେ ଅଶା ମନର ।
ତେବେ କାହାକୁ ଭୟହେବ ଭବକୂପେ ଦର,
ନରସିଂହ ଅଶ୍ରାକରନ୍ତି ରକ୍ଷ ରକ୍ଷ ମୁଖର ।
ମୃଗିଣୀ ଭଉଣୀ ବ୍ୟାଧଣ ବନେ ତରୁଯେ ସ୍ଥଳ,
ନର ମୃଗରୂପ ଲଗନ୍ତେ ନରସିଂହ ଧାଇଁଲ ।
ତାହାର ଅରଜ ଯାଣିଣ ରଖିଅଛ ଶ୍ରୀହର,
ମୁହିଁ କେଉଁ ଦୋଷ କରନ୍ତି ଜଣାଣଯେ ତୁହାର ।
ସାଧୁଚରଣଯେ ଭ୍ରମିଲ ମାୟାସାଗରେ ପଡ଼ି,
ଏହି ସମ୍ପ୍ରୁ ଜାଣିପ୍ରଭୁ ଦେଉଅଛଯେ ଘୁଡ଼ି ।
ନହେ ମୁହିଁ ନାଶଗଲିହେ କରମୋତେ କାରଣ,
ଅଶରଣ ଜନ ଶରଣ ଅହେ ରମାରମଣ ।
ଏତେବେଳ ପ୍ରଭୁ ଥାଉଣ ଗଲ ମୁଁ ଯେବେ ନାଶ,
କେ ଅବନ ମୋତେ ରଖିବହେ କହ କମଳାଏଶ
ନବଜଳଧର ଶରୀର ବଦ୍ୟ ହେ ପୀତାମ୍ବର,
କରୁଣା ଜଳବୃଷ୍ଟି ପୁଣ କରୁଅଛ ନକର ।
ସାଧୁଚରଣଦାସ ଚଉ ହେଲା ଚାତକ ତହିଁ,
ଅଣା ନଛେଦ ପ୍ରପନ୍ନେଯେ ହେବ କମଳାସାଇଁ ।
ମାୟାରେ ସଂସାର ଛନ୍ଦଣ ଅଛ ସାରଙ୍ଗ ଧର,
ବ୍ରହ୍ମାରୁଦ୍ରଙ୍କ ଅଗୋଚର ଅଟେ ମାୟା ତୁମ୍ଭର ।
ଏଣେ ବୃନ୍ଦାବନେ ନାରଦଋଷି ପ୍ରବେଶହେଲେ,
ଗୋପାଳ ପୁଅଙ୍କ ଭୋଜନ ଭୂମିସଙ୍ଗେ ଦେଖିଲେ ।

ଏକାଦଶୀ ତିଥି ଅଟଇ ସେହି ଦିବସ ପୁଣ,
ତହିଁ ନିର୍ମାଲ୍ୟ ସେବନକଲେ କଇଳାସ ବସେଣ ।
ରୁଦ୍ର ପାର୍ବତୀ ଏକାଦଶୀ ବ୍ରତ କରୁଅଛନ୍ତି,
କଇବଲ୍ୟ ଦେଖି ଉଠିଲେ ଅନେ ପାର୍ବତୀପତି ।
ତାଙ୍କଠାରୁ ତୋଟଷ ନେଇଣ ଅଂଶେ କଲେ ଭୋଜନ,
ପାର୍ବତୀ ସଂଶୟ ଧଇଲେ ଦେଖି ଅପଣା ମନ ।
ଏକଥା ଜାଣିଣ ଶଙ୍କର ପାର୍ବତୀଙ୍କି ବୋଧିଲେ,
ହରନିର୍ମାଲ୍ୟ ଏଅଟଇ ଅମୃତ୍ତରେ ମିଳିଲେ ।
ଏକାଦଶୀ ବୋଲି ଫଣସ୍ତୁ ମହେନକର ଉଉସ,
କୋଟିଏ ଏକାଦଶୀ ଫଳ ମିଳିବ ମହୋତ୍ସାସ ।
କାଶୀ ବାରଣସୀ କ୍ଷେତ୍ରରେ ଯେତେ ତପ କରିବ,
କଳ୍ପ କଳ୍ପ ବସି ହେଣ ଯେବେ ଯୋଗ ସାଧିବ ।
ଗଙ୍ଗା ଯମୁନା ସରସ୍ୱତୀ ତୀର୍ଥମାନଙ୍କ ସ୍ନାନ,
ଏତେ ଧର୍ମକଲେ କୈବଲ୍ୟକୁଯେ ନୁହେ ସମାନ ।
ସବୁଫଳ ଅସି ମିଳଇ ହରନିର୍ମାଲ୍ୟ ଦେଖି,
ଏହେ ଭାଗ୍ୟ ଅଛିଥିଲାଗୋ ଶୁଣ ସରୋଜ ମୁଖୀ ।
ବିଶେଷ ମହାସାଧୁ ଏହୁ ନାରଦଙ୍କ ଦର୍ଶନ,
ଏକାଦଶୀ ଫଳ ପ୍ରାପତ ଅଜହୋଇଲା ଜାଣ ।
ଶୁଣି ଉମା ତୋଷହୋଇଣ କଇବଲ୍ୟ ପାଇଲେ,
ସାଧୁଚରଣ ଦାସ ଭାବ ହେଲା କୃତାର୍ଥ ହେଲେ ।
ଏମନ୍ତ ସାଧୁଙ୍କ ମହିମା କଇବଲ୍ୟ ଅଟଇ,
ସକ୍ତହୋଇ ଲାଗି ଅଲୁବ କରୁଅଛ ଗୋସାଇଁ ।

ତୁମ୍ଭମାୟା କେହୁ ଜାଣଇ ଯହିଁ ବ୍ରହ୍ମା ଭୁଲିଲେ,
ଗୋବତ୍ସବାଳ ଦେଖଯାଇ କମଣ୍ଡଳେ ରଖିଲେ ।
ସେହିରୂପେ ବତ୍ସ ବାଳକ ହୋଇ କରିଛ ଜାତ,
ବ୍ରହ୍ମା ହାରିଯାଇ ଶରଣ ପାଦେ ଗଲେ ତ୍ୱରିତ ।
କେତେ ଅନ୍ଧଙ୍କୁ ଚକ୍ଷୁଦାନ ଦେଇଅଛ ଗୋସାଇଁ,
ପଦ୍ମ ତୋଳି କାଳୀ ଦଳନ କାଳନ୍ଦୀରେ ସେ ଯାଇ
ଗରୁଡ଼ ସେବାକଲେ ଆସି କାଳୀ ଦର୍ପ ଦଳିଲ,
ମୁରଲୀ ବଜାଇ ମୋହିଛ ପ୍ରଭୁ ଗୋପ ଅବଳା ।
ଇନ୍ଦ୍ର ବାଦେ ଗିରି ତୋଳିଲ ଇନ୍ଦ୍ର ଦର୍ପ ଦଳଣ,
କେତେ ଗୋପାଳଙ୍କୁ ରଖିଛ ଘୋର ଅଗରୁ ଜାଣ ।
ଇନ୍ଦ୍ର ଶରଣେ ଯେ ପଶିଲା ଯହୁଁ ହୃଦେ ଚହିଲା,
ସାଧୁଚରଣ ଦାସକୁ ଯେ ରଖି ନପାର ଭଲା ।
କବି ପ୍ରାସ୍ତୁ କେତେ ଜଣାଣ କରିବଇଁ ଗୋସାଇଁ,
ତୁମ୍ଭେତ ଦାରୁଣ ହୋଇଛ ଭୃତ୍ୟ ଅରତ ସହ ।
ହୋଇଲା ଅତି ଆରତରେ ତୁମ୍ଭେ ନୋହିଲ ସାହା,
ସେତୁବନ୍ଧ ବାନ୍ଧି ଛେଦିଲ ଲଙ୍କା ହେଲକ୍ଷ୍ମୀନାହା ।
ଅଙ୍ଗାରେ ପର୍ବତ ଭ୍ରମିଲ ପୋଲ ମତ ଯେ ହୋଇ,
ଏମନ୍ତ ମହିମା ତୁମ୍ଭର ଅଛେ କମଳା ସାଇଁ ।
ପ୍ରହଲ୍ଲାଦ ଛଳେ ସ୍ତମ୍ଭରୁ ତୁମ୍ଭେ ହେଲ ଜନମ,
ଜାନୁରେ ପକାଇ ବିଦାରିଅଛ ଦୈତ୍ୟ ହିରଣ୍ୟ ।
ଚନ୍ଦ୍ରରୁ ଶୀତଳ ସ୍ୱରୂପ ନାଥ ଅଟେ ତୁମ୍ଭର,
କୋଟିଏ ମୂର୍ତ୍ତିଙ୍କୁ ଜିଣିଛି ତୁମ୍ଭର କଳେବର ।

ପବନରୁ ଅତି ବେଗ ପୁଣ ଅଟଇ ତୁମ୍ଭଗତି,
କ୍ଷମା ଦୟାଶୀଳ ଅଟହେ ଅହେ କମଳାପତି ।
ଅଚଳମେରୁ ଠାରୁ ପୁଣ ଅଧିକଯେ ଅଟଇ,
ଅତି ସୂକ୍ଷ୍ମରେ ତୋହରୂପ ତୁଲ୍ୟ ଦେଖାଯେ କାହିଁ ।
କୀଟୁଁ ବ୍ରହ୍ମଯାଏଁ ବଜସ୍ତୁ ନାଥ ଏକ ଶରୀର,
ଜୀବପରମବ୍ରହ୍ମରୂପେ ନାଥ ଅଟଇ ତୋର ।
ନୟନ ଗୋଚରରେ ଥାଇଣ ନକହୁଯେ ଭାରତୀ,
ତହିଁ ଏଡ଼େମାୟା କରଣ ଅଛ କମଳାପତି ।
ଅନ୍ଧ ପାଇଲେ ଦିଏ ଚକ୍ଷୁ ନେଇଥିଲେଯେ ଅନ୍ଧ,
ତୋର ଅପରାଧ ହୋଇଲେ ଧୀର ଥାଇ କବନ୍ଧ ।
ମୁହିଁ ନେତ୍ରହୀନ ବୋଲିଣ, ମୋତେ ଦୟାନକର,
ସାଧୁଚରଣ ଦାସଠାରେ ମାୟା ଏଣୁ ବିସ୍ତର ।
ତୁମ୍ଭ ମାୟାରେ ବ୍ରହ୍ମାହର ସୁର ଭୁଲିଲେ ହରି,
ମୁଁହ ଅବାଯେ କେତେମାତ୍ର ଶୁଣ ନରକେଶରୀ ।
ଦୁର୍ଯ୍ୟୋଧନ ମାନୀ ଅଟଇ ପଣ୍ଡିତ ଜାଗ୍ରତ,
ଭାରତ ଯୁଦ୍ଧରେ ତାହାଙ୍କୁ ମାୟାକଲ ଅପଣ ।
ତୁମ୍ଭମାୟାକୁ ନଚିହ୍ନିଣ ସେହୁ ସମର କଲା,
ଜାନୁଭଙ୍ଗ ହୋଇ ସମରେ ଦୁର୍ଯ୍ୟୋଧନ ପଡ଼ିଲା ।
ଗାନ୍ଧାରୀ ମାୟାରେ ପଡ଼ିଲେ ପୁତ୍ରଶୋକ ପାସୋରି,
କ୍ଷୁଧାରେ ବିକଳ ପାଇଲେ ପୁତ୍ରଚନ୍ଦ୍ରାଙ୍କୁ ହରି ।
ଏମନ୍ତ ମାୟାତୁମ୍ଭରହେ ତୁମ୍ଭେ କି କି ନକର,
ମୋହ ସ୍ଥିରବିନା ମାଧବ ଶୁଣ କମଳାବର ।

ମୋହଠାରେ ଏଦା ଯାଉଲେ କେଷେ ତସ୍କର ମୁହିଁ,
ତ୍ରିଶଙ୍କ କର୍ତ୍ତ୍ରୁ ଦେଇ ବଗୁଛବେ ଗୋସାଇଁ ।
ମୁଁ ହ ଅଃଇ ଅପରାଧୀ ମୋତେ ଡକର ମାଧ୍ୱ,
ଅପରାଧ କ୍ଷମା କରଣ ପ୍ରଭୁ ହୋଇବ ସାଦା ।
ସାହା ନୋହଲେ ଗଲଜାଙ୍ଗ ଏକଥା ଦୃଢ ବ୍ରତ,
ଅନ୍ତର୍ଯ୍ୟାମୀନାଥ ଶରଣ ଗଲି ମୁ ଯାଚଭୃତ୍ୟ ।
ସାଧୁଚରଣ ଦାସ ପ୍ରଭୁ ତୋତେ କହୁଛି ଅଗ,
ଅଛ କାହାକୁ ଯେ ଭରସା ନାହିଁ ଲକ୍ଷ୍ମୀବିଳାସ ।
କରୁଣାସାଗର ଶ୍ରୀହର କମଳପଦ ଦେନ,
ତୁମ୍ଭ ବିନୁ ଅନ୍ୟ ମୋହର ନାହିଁ ହେ ଜଗନ୍ନାଥ ।
ପୁରୁଷୋତ୍ତମ ବଳକୃଷ୍ଣ ଅଟନ୍ତ ଯାଇବ ମୁହିଁ,
ଏମନ୍ତ ମନରେ ଭାବଇ ଅହେ କମଳାସାଇଁ ।
କ୍ଷେତ୍ରରାଜ ମହନ୍ତ ଅଟଇ ତୁମ୍ଭେ ତ ଦେବରାଜ,
ମୁଁ ଭୃତ୍ୟପଣକୁ ସମାନ କାହିଁ ହୋଇବ ନେଜ ।
କାଶୀବିଶ୍ୱନାଥ ଅଛନ୍ତି ତନ ପାବଛ ତଳେ,
ପତିତପାବନ ଦର୍ଶନ କରୁଛନ୍ତି ନିର୍ମଳେ ।
ମୁହିଁ ପାପୀଙ୍କର ନୃପତି ହୋଇଅଛି ଗୋସାଇଁ,
ତୁମ୍ଭ ବାନାରେ ପାପଅର ଶୁଣହେ ଭବଗ୍ରାହୀ ।
ତାକୁ ଯେବେ ଜିଣିପାରିବ ତେବେ ଜାଣିବା ବଳ,
ବଳ ଦେଖିଣ ଜଡରହେ ଅହେ କମଳାବର ।
ଏକଥା ଜନାହୋଇବଟି ସଂସାରରେ ମୁରର,
ମୁହିଁ ଅଣ୍ଡାକର ଅଛଇ ପାଦକମଳ ଧର ।

ଜମ୍ବୁକେଶ ଜଗନ୍ନାଥ କୃପା କରିବ ବାରେ,
ମୋର ତୁମ୍ଭବିନୁ ଭରସା ନାଥ ନାହିଁ ସଂସାରେ ।
ଜନ୍ମେ ଜନ୍ମେ ମୁହିଁ ତୁମ୍ଭର ଭୃତ୍ୟଅଟେ ଗୋସାଇଁ,
ଏକଥା ଆପଣ ଜାଣତ ଅଟେ କମଳାସାଇଁ ।
ସାଧୁଚରଣ ଦାସ ପଢ଼ୁ ଜନ୍ମେ ତୁମ୍ଭର ଦାସ,
ଦାସଠାରେ ତୁମ୍ଭେ ନସ୍ୱ ନକର ପୀତବାସ ।
ପାଷାଣ ରୂପରୁ ତାରିଛ ଗଉତମର ନାରୀ,
ଗୁହକ ଚଣ୍ଡାଳ ଶବରଯେ ସ୍ୱଳ୍ପ କ ତପକର ।
ତାହାସଙ୍ଗେ ମିଳି ହୋଇଯେ ନିଜଧାମେ ପେଶିଲ,
କପି ପଶୁଜନ୍ତୁ ଧରଣ ସେବି ପାଦ କମଳ ।
ପଶୁଜନ୍ତୁରୁ କୃତାର୍ଥଯେ କରିଅଛ ଆପଣ,
ଅନ୍ତେ ବୈକୁଣ୍ଠ ଚଳିଲେ ସେବି ତୁମ୍ଭ ଚରଣ ।
ଚଣ୍ଡାଳ ପଶୁ ପାଷାଣକୁ ତାରିଅଛ ମୁରାରି,
ଏହି ଲକ୍ଷଣ ମୋହଠାରେ ଅଛି କୋଦଣ୍ଡଧାରୀ ।
ମୋହର ଚିତ୍ତଯେ ପାଷାଣ କେବେ ତରଳେ ନାହିଁ,
ନାନାପ୍ରକାରେ ନରକେର ପଶୁ ଚେଷ୍ଟାଯେ ବହି ।
କିମ୍ବା କର୍ମମାନ ଚଣ୍ଡାଳ କର୍ମ ସଙ୍ଗତେ ସରି,
ଏଣୁ କେଉଁକୁତେ ତରିବ କହ ଏଭବଘୋର ।
ଏତେ ଲକ୍ଷଣୁ ଚଣ୍ଡାଳକୁ ତାରିଅଛ ଯେସାଇଁ,
ମୁଁ କେଉଁ ଦୋଷ କରିଅଛି ନତାରିବଯେ କପାଇଁ ।
ରଘୁନନ୍ଦନ ଧାମକୁ ମୁଁ କରିଅଛି ପୟର,
ଭବସିନ୍ଧୁ ମଧ୍ୟେ କରିଛି ଏହି ନାମକୁ ଭେଳା ।

ହେଲା ଲକ୍ଷଣ ତାହାର ମୁହିଁ ଗଲି ଶରଣ,
ସାଧୁଚରଣ ଦାସ କହେ ଏହିବାଞ୍ଛା ହୃଦେଶ
ଭକତମାନଙ୍କୁ ଅଭୟପଦ ଦେବଯେ ହରି,
ଏକଥା ବଚନ ଅଟଇ କହି ରଥାଙ୍ଗଧାରୀ ।
କୀଟ ନିଜଗଣ ପାଳିବାପାଇଁ ଚିନ୍ତା କରଇ,
ତାଙ୍କ ନିମନ୍ତେ ଉଦ୍‌ବେଗ ଯେହ୍ନେ ନରତେ ହୋଇ ।
ଏକଥା ବଚନ ଅଟଇ ଅହେ ଶୁଣ ଅନନ୍ତ,
ଯେହ୍ନେ ସ୍ୱପନେ ତୁମ୍ଭନାମ ନ ଭୁଲଇ ଭକତ ।
ଯବେ ଦୈବସ ସାଧୁପାଦେ ହୋଇଥାଇ ରକ୍ଷିତଜଣା,
ତାହାତାରେ ପ୍ରଭୁ ହୋଇବ ଯେତେବେ ତୋର କରୁଣା
ତେବେ ଜାଣିବା ଦୀନବନ୍ଧୁ ଦୟାସାଗର ହରି,
ନୋହିଲେ ବଚନ ଅଟଇ ଶୁଣ ନରକେଶରୀ ? ।
ପତିତପାବନ ପତାକା ଉଡ଼ୁ ଅଛି ତୁମ୍ଭର
ସାଧୁଚରଣ ଦାସକୁ ଯେ ପ୍ରଭୁ ତାରେ ଉଦ୍ଧର ।
ମୋହପ୍ରାୟ ପାପୀ ଅଛଇ କେହ୍ନ କହ ମୁରାରି,
ତୁମ୍ଭପ୍ରାୟ ପାପହରନ୍ତା ନାହିଁ ଏତିନପୁରୀ ।
ଏହାବିସ୍ତର ଦେବକ୍ଷଣ କଣ କହିବ ଅନ୍ତ,
ସନ୍ଧିକି ଯୋଗ୍ୟହେବ ମୁହିଁ ତାହା ଅଜ୍ଞାଯେ ଦେଉ ।
ଅଜ୍ଞାନୋହିଲେ ଯନ୍ତ୍ରାମୋର ହେବ କରୁଯେ ଦାଶ,
ଏହା କହୁଅଛି ହୃଦରେ ସାଧୁଚରଣ ଦାସ ।
ପତିତପାବନ ବ୍ରତଯେ ଲଭିଅଛ ଗୋସାଇଁ,
ଏତେତ ସାହସ କରଣେ ବ୍ରତ ଭଲ କୃପାଇଁ ।

ମୁହିଁ ଏତେ ପାପୀ ବୋଲିଣ ନଥିଲୁକ ଗୋଚର
ଏଣୁ ପ୍ରତିଜ୍ଞା କରିଣ ଯେବ୍ରତ କଲ ଶ୍ରୀଧର ।
ଉଦ୍ଧରିବାକୁ ଏତେକାଳ ଯାହିଁ କମଳା ସାଇଁ,
ପାରିଲେ ପତିତ ଉଦ୍ଧାର ରତ୍ନାକର ଗୋସାଇଁ
ଦେଇଥିଲେ ପତିତପାବନ ବାନାରଖି ଭଣ୍ଡାରେ
ଖମ୍ଭା ଉଡ଼ୁଥିବ ଶ୍ରୀହରି ଲକ୍ଷ୍ୟହେବ ଯପାରେ ।
ବାନା ଉଡ଼ାଇଣ ପାପକୁ ତୁମ୍ଭେ ଡରାଉଥିଲ,
ଏବେ ମୋରପାପ ଦେଖିଣ ନାଥ ଘୁଞ୍ଚିରହିଲ ।
ପାତକମାନେ ମୃଗପ୍ରାୟ ତୁମ୍ଭବାନା ଶାର୍ଦ୍ଦୂଳ,
ମୋରପାପ ଦିଶା ଅଟଇ ମତ୍ତଗଜ ଆକାର ।
ତାକୁ ଜିଣିଲେ ତୁମ୍ଭବଳ ଜାଣିବାଟି ମୁରହର,
ମୁହିଁ ପାପୀଙ୍କର ମଧ୍ୟରେ ରଜା ଜରକେଶରୀ ।
ଏହି ନୃପତିଙ୍କୁ ଜିଣିଲେ ଜାଣିବା ବାନାବଳ,
ସାଧୁଚରଣ ଯେ ତହିଁକି କରୁଅଛି କଟାଳ ।
ପ୍ରତିଜ୍ଞା ତୁମ୍ଭର ଥାଉବା ନଥାଉଯେ ମୁରହର,
ନାନା ପାତକମାନେ ଭଜ ତୁମ୍ଭ ନାମ କେଶରୀ ।
ତହିଁକି ମୋହର ଭରସା ଅଛି କମଳା ବର,
ରୂପବଣୁ ବା ଗଦଶୁହେ ନାମ ତତ୍ତ୍ୱ ମୋହର ।
ନାମକୁ ହୃଦରେ ଭାବଇ ଅନ୍ୟ ଇଚ୍ଛା ନକରି,
ତୁମ୍ଭନାମ ମୋର ଧନହେ ସଙ୍ଗ ଯିବା ବସ୍ତୁର ।
ସାଧୁଚରଣ ଦାସଙ୍କୁ ତୋ ନାମ ପ୍ରସନ୍ନ ହେଉ,
ଏହିବାଞ୍ଛା ତୋର ଚରଣେ ଶତ୍ତ ମନାଇ ଥାଉ ।

କପୋତ କପୋତ୍ନୀ ଚିନ୍ତିଲେ ବ୍ୟାଧ ସଞ୍ଚାଣ ଦେଖି
ତାହାଙ୍କୁ ଅରତ୍ରୁ ରଖିଛ ଅହେ କମଳ ଅକ୍ଷି ।
କୋଦଣ୍ଡେ ଶର ପୁରାଇଣ ଅଗେ ବ୍ୟାଧ ମିଳିଲା
ସଞ୍ଚାଣକୁ ମେଲି ଦଅନ୍ତେ ଗଗନରେ ଘୋଟିଲା ।
ମଧ୍ୟରେ ଦେବନ ପକ୍ଷୀ ରହି ଡାକିଲେ ତୁମ୍ଭଙ୍କୁ
ଏଡ଼େ ନିଗୂଢ଼ ଅରତରୁ ରଖିଅଛ ତାହାଙ୍କୁ ।
ବ୍ୟାଧକୁ ସର୍ପଯେ ଦଂଶନ୍ତେ ଶର ହସ୍ତୁ ଖସିଲ,
ବେଗେ ଯାଇଣ ଅକାଶରେ ସଞ୍ଚାଣକୁ ସେ ମାରୁ ।
ସର୍ପଘାତେ ବ୍ୟାଧ ନିଧନ ଶରଘାତେ ସଞ୍ଚାଣ,
ଏତେ ଅରତ୍ରୁ ଉଦ୍ଧରିଲେ ଦେବନପକ୍ଷୀ ଯେ ପୁଣ ।
ଜଗନ୍ନାଥ ନାମ ଧରଣ ଦେବନପକ୍ଷୀ ଚଳିଲେ,
ସାଧୁଚରଣ ଦାସ ଜାଣି ଏହା କହିଲା ଭଲେ ।
ତୁମ୍ଭର ମହିମା ଏମନ୍ତ [illegible] ଦଇବହର,
ଅଗ୍ନି ଭିତରୁ ରଖିଅଛ ଭକ୍ତବତ୍ସଳେ ମାୟାଧାରୀ ।
ଅଜ୍ଞାନ ପଶୁ ବୁଦ୍ଧିନର ବନସ୍ତରେ ଯେ ଥିଲା,
ମାତା ପିତାଙ୍କ ବରୁଥେ ଯେ ପଶୁମେଳେ ରହିଲା ।
ପଶୁ ଆଚରଣ କରଇ କିଛି ଜ୍ଞାନଯେ ନାହିଁ,
ସୁଭାଗ୍ୟ ବଳରେ ଭକ୍ତର ଭେଟ ପଡ଼ିଲା ଯାଇଁ ।
ତାଙ୍କୁ ପୁଛିଲାଯେ ବର୍ଣ୍ଣି କିସ କର ବଗୁର,
ଏହି ବନସ୍ତ ଦେଶୁ ଆସି ପଣ ଅଟେ ମୋହର ।
ମୋଠାରେ ତୁଳିଅଁ ନମିଳି ମୋର ବନେ ପଶିଛୁ,
ଏଘୋର ଅରଣ୍ୟେ ପଶିଣ କାହାକୁ ଲୋଡ଼ୁଅଛୁ ।

ଏହାଶୁଣି ଯତିବୋଲଇ ଶୁଣ ଅରେ ଶୃଗାଳ,
ଭଜୁଅଛ ମୁହିଁ ନରତେ ହୃଦେ ଭୃତ୍ୟ ବତ୍ସଳ ।
ଏହାଶୁଣି ପଶୁନରମେ ବୋଲୁଅଛି ବଚନ,
ମୋର ରକ୍ଷାବନେ ତପସ୍ୱୀ ଅଛନ୍ତି ତପୋଧନ ।
ଋଷିବୋଇଲେ ସବୁଠାରେ କରିଛନ୍ତି ବିଜୟେ,
ସ୍ଥାବର ଜଙ୍ଗମ କୀଟମେ ପତଙ୍ଗଠାରେ ରହେ ।
ଯହିଁ ଦେଖିବ ତହିଁହରି ଯେବେ ସୁଜ୍ଞାନ ଥିବ,
ଶୁଣି ପଶୁନର ବୋଲଇ ଖୋଜଅଣି ମାଧବ ।
ନଦେଲେ ଅଗ୍ନିରେ ପଶିବ ସତ୍ୟ ସତ୍ୟ ଏବାଣୀ,
ଏମନ୍ତ ହୋଇଣ ଅରଣ୍ୟେ ଖୋଜୁଅଛଇ ପୁଣି,
ଖୋଜ ଖୋଜ ଅନ୍ତ ନପାଇ ସନ୍ଧ୍ୟା ହୋଇଲା ଯହୁଁ
ଅଗ୍ନି ଲଗାଇ ପ୍ରଦକ୍ଷିଣକଲା ଦଣ୍ଡନ୍ତେ ସେହୁ ।
ଦୟାକ୍ରିନାଥ ଦୟାକର ତାର ଅଗେ ମିଳିଲ,
ସ୍ୱଭକ୍ତ ବନ୍ଧା ହୋଇକରି ତାଙ୍କୁ ଦର୍ଶନ ଦେଲ ।
ସେହୁ ହେନକର ଅର୍ପିଣ ଋଷିଙ୍କୁ ଭେଟାଇଲା,
ଦେଖି ଋଷିବର ଅନନ୍ଦେ ତୋର ପାଦେ ପଡ଼ିଲା ।
ହରିମହିଁ ବେନି ଜନଙ୍କୁ ନେଲ ବୈକୁଣ୍ଠ ପୁରୀ,
ସାଧୁ ସଙ୍ଗୁ କର୍ମଶୃଗାଳ ତରିଅଛି ମୁରାରି ।
ତୁମ୍ଭ ଭକ୍ତ ସେବା ଏମନ୍ତ ଶୃଗାଳକୁ ତାରିଲେ,
ସାଧୁଚରଣ ଦାସ ଶୁଣି ଗଡପାଇଲା ଭଲେ ।
ଅନେକ ପାପୀଙ୍କୁ କାରଣ କରିଅଛ ଗୋସାଇଁ,
ତହିଁରୁ ଅଧିକ ମୋପାପ ଜାଣ ହେ ଭବଗ୍ରାହି ।

ମୁହିଁ ଅଜାମିଳ ନୁହଇ କଇବବସେ କାରଣ,
ମୁହିଁ କାକପକ୍ଷୀ ନୁହଇ ଚତୁର୍ଭୁଜ ଧାରଣ ।
ମୁହିଁ ନୁହଇ ଶିଶୁପାଳ କଇବବସେ କୃତାର୍ଥ,
ଶବରୀ ନୁହଇ ମୁହିଁସେ ମୋତେ କଇବ ମୁକ୍ତ ।
ମୁହିଁ ନୁହଇ ନାଗଗ୍ରୀବ ମୋତେ କଇବ ଗତ,
ଗୁହ ଚଣ୍ଡାଳ ମୁଁ ନୁହଇ ଶୁଣ ଅହେ ଶ୍ରୀପତ ।
ମୃଗିଣୀ ଗଜ ମୁଁ ନୁହଇ ମୋତେ ରକ୍ଷା କରିବ,
କପୋତ କପୋତୀ ନୁହଇ ଅରତରୁ ତାରିବ ।
ନରପଶୁ ମୁହିଁ ନୁହଇ ମୋକ୍ଷ ଦେବଟି ଯାଇ,
ଧନେଶ୍ୱର ବିପ୍ର ନୁହଇ ନର୍କୁ ରଖିବ ନେଇ ।
କନ୍ଧାମୂଷ ଗୃଧ୍ର ନୁହଇ ପକ୍ଷୀରୂପ ତେଜିବ,
ପୂତନା ରାକ୍ଷସୀ ନୁହଇ କ୍ଷୀରଦେଇ ତରିବ ।
ପିଙ୍ଗଳା ବେଶ୍ୟା ମୁଁ ନୁହଇ ବଇକୁଣ୍ଠକୁ ନେବ,
କୁବ୍ଜ ଦାସ ମୁହିଁ ନୁହଇ ଅନ୍ଧକୂପୁଁ ରଖିବ ।
ଏଲଘୁ ପାପରୁ ତାରିଣ ତୁମ୍ଭେ ପ୍ରତିଜ୍ଞା କର,
ପତିତପାବନ ବାନାସେ ଢଡ଼ ଅଛି ତୁମ୍ଭର ।
ମୁହିଁ ଅପରାଧୀ ମଧ୍ୟେଣ ପାପୀଶ୍ରେଷ୍ଠ ରାଜନ,
ମୋତେ ଯେବେ ଏଥୁ କାରଣ କଇପାର ଅପଣ
ତେବେ ଏ ବାନାର ପ୍ରତିଜ୍ଞା ରହିବଟି ଗୋସାଇଁ,
ଅଳ୍ପ ପାପୀଙ୍କୁ ତାରିଣ ନକରସେ ବଡ଼ାଇ ।
ମୋହ ପ୍ରାୟ ପାପୀ ସଂସାରେ କାହିଁ ଦେଖିବା ହରି,
କଳ୍ପ କଳ୍ପ ହୋଇ ଖୋଜିବା ଯେବେ ବୃଦ୍ଧି ବଗ୍ରରି

ଏଥିକୁ ମୁହିଁ କହୁଅଛି ମୋତେ କର ଉଦ୍ଧାର,
ସାଧୁଚରଣଦାସ କହେ ଫସନ୍ତୁ କିପାଇଁ କର ।
ମୋହର ଅଶୀଷ୍ଟ ଅଟଇ ମୃଗଚନ୍ଦ୍ର ପରସ୍ତୁ,
ନତାରିଲେ ଚିହ୍ନ ରହିବ ଅହେ ଦେବାଧିରାସ୍ତୁ ।
ଏକଥା ମନରେ ନଚିନ୍ତ ହେଳାକର କିପାଇଁ,
ଏବେ ସାବଧାନ ହୁଅହେ ଢସ କରିବ ମୁହି ।
ଚନ୍ଦ୍ରରେ କଳଙ୍କ ଲାଗିଲା ପ୍ରାୟ ହେବଟି ଜାଣ,
ଲାଗିଲେ ନିନ୍ଦା ହୋଇବହେ ଏହୁ ତିନ ଭୁବନ ।
ଅଗ୍ନିରେଟି ତୁଳା ରହିବ କେହ୍ନେ ଯିବ ପରବେତ,
ତୁମ୍ଭ ନାମ ଯେ ଅଗ୍ନିକୁଣ୍ଡ ପାପ ତୁଳାପର୍ବତେ ।
ଏହାବିଗୁରୁଅଛି ମୁହିଁ ହରି ହୃଦରେ ଜାଣ,
ଏଥିକୁ ତୁମ୍ଭେ ନତରିହେ ଅହେ ରମାରମଣ ।
ତୁମ୍ଭ ଶରୀର ଯେ ଶ୍ୟାମଳ ମୋର ପାତକ କଳା,
ଏଣୁ ବର୍ଣ୍ଣମିଶ ହୋଇଲା ଏହା ବିଗୁର ଭଲ ।
ତୁମ୍ଭ ମିଶକୁ ତୁମ୍ଭେ ହରି ଅନ ହରିବ କେହ୍ନୁ,
ତୁମ୍ଭ ଦେହ ତେଜ ଶୁଣିଣ ପେହ୍ନୁ ଜଳଯେ ହେଉ ।
ଏହି ପ୍ରକାରେ ମୋର ପାପ ତୁମ୍ଭେ କର ଅନ୍ତର,
ସାଧୁଚରଣଦାସ କହେ ମୁହିଁ ଶରଣ ତୋର ।
ପୂର୍ବେ ସାରି ପକ୍ଷୀ ସାଧବ ଗୃହେ ବନ୍ଧଯେ ଥିଲା,
ଚରଣେ ସାଙ୍କୁଳି ଦେଇଣ ପିଞ୍ଜରାରେ ରଖିଲା ।
ରାମଗୋବିନ୍ଦ ବନମାଳି ନିରନ୍ତରେ ବୋଲଇ,
ହେତୁପାଇଣ ପକ୍ଷୀ ନିତ୍ୟ ପ୍ରଭୁ ଚିନ୍ତା କରଇ ।

ଗୋବିନ୍ଦ ନାମ ନିରବଧି ଯେହୁ କରେ ଗାୟନ,
ନିନ୍ଦାସଙ୍କୁଳ ପାଦେ ଥାଇ ଅନାୟତ୍ତ ସେ ଜାଣ ।
ଏକଦିନ ପୂର୍ବଆଶ୍ରମରେ ସାଧୁସଙ୍ଗ ପ୍ରବେଶ,
ରାମନାମ ଉଚ୍ଚାରଣ କରୁଛନ୍ତି ଅଭ୍ୟାସ ।
କୃଷ୍ଣ ସ୍ମରିବା ମାନବେ ନର ଅପଦ ଯାଇ,
ଯେହୁ ନିରବଧି ଚିନ୍ତଇ ତାଙ୍କ କି ଗତି ନୋହି ।
ଏହା ଜାଣନ୍ତି ଶିବାଦି ଇନ୍ଦ୍ର ବ୍ରହ୍ମାଙ୍କୁ ଅଗୋଚର
ରାମନାମ ଅଗ୍ନି କୁଣ୍ଡରେ ପାପ ତୁଳା ଆକାର ।
ଏହା ଶୁଣି ସାଧୁ ବୋଲଇ ଅହେ ଶୁଣ ସାଧବ,
ତୁମ୍ଭେ ବୋଲଇ ଦୁଃଖହତ ଚିନ୍ତା କଲେ ସମ୍ଭବ ।
ଏକଥା କେମନ୍ତେ ମୁଁ ପ୍ରତେ କରିବଇଁ ଗୋସାଇଁ
ନିରବଧି ବନ୍ଦ ରହିଛ ପାପେ ସଙ୍କୁଳ ନାହିଁ ।
ଏଥିରୁ ମୁକତ ହୋଇଲେ ରାମନାମ ସ୍ମରଣ,
କେମନ୍ତେ ଏକଥା କହିଲ କହ ହେ ବ୍ରାହ୍ମଣ ।
ଶୁଣି ସାଧୁ ହେଲେ ମଉନ ଚିତ୍ତେ କଲେ ବିଚାର,
ପରୀକ୍ଷିଲୁ ସତ୍ୟ କହିଲି ଯେଣୁ କନ୍ଦର୍ପସ୍ତର ।
ଏମନ୍ତ ବିଚାରି ମଉନ ହୋଇ ମଠକୁ ଗଲେ,
ରାତିରେ ଶ୍ରୀହରି ସମ୍ମୁଖରେ ଯାଇ କହିଲେ ।
ସ୍ୱପନେ ଶ୍ରୀହରି କହିଲେ ଶୁଣହେ ସାଧୁଜନ,
ତତ୍ତ୍ୱରେ ବସନ୍ତ ନିତ ବୋଲଇ ମୋର ନାମକୀର୍ତ୍ତନ ।
ଯେ ବିପ୍ରବେଳେ ଭକ୍ତେ ଧରିବ ତହିଁ ହେବ ମୁକତ,
ଏମନ୍ତ କହି ଅନ୍ତର୍ଦ୍ଧାନ ହେଲେ ଜଗନ୍ନାଥ ।

ପୁଣିସାଧୁ ତହୁଁ ଚଳିଲେ ମହାଜନ ନଗରେ,
ରାମନାମ ଛିଟିଟାକିଣ ଦେଲେ ସାଧୁଅଗରେ ।
ସାରିବୋଲଇ ଭଣ୍ଡସାଧୁ କେତେ ଡାକ ରାମକୁ,
ମୋର ବନ୍ଧନ ନଚିଣ୍ଟିଲ ଭଜ ରାମନାମକୁ ।
ଶୁଣିସାଧୁ ତାକୁ ବୋଲନ୍ତି ତୁହି ତତ୍ତ୍ୱେ ନଧରୁ,
ଦେବମନ୍ତ୍ରେ ପାଇବୁ ଶରଣ ସେହୁ କଳପ ତରୁ ।
ଶୁଣି ସାଣ୍ଡ ଭଯ୍ୟକରଣ ପ୍ରେମଜାତ ହୋଇଲା,
ହା, କୃଷ୍ଣ ବୋଲି ସୁମିରନ୍ତେ ମୋହେ ସେହ୍ନଡଡଲା ।
ଲୋଟକେ ବୋଇଲେ ସାରମଲା ତାକୁଦେଲେ ପିଠାଇ
ଶାଙ୍କୁଳ ପିଟନ୍ତେ ସାଚିର ଜ୍ଞାନ ହୃଦେବସଇ ।
ଦେଖିଲା ପାଦରେ ଶାଙ୍କୁଳ ନାହିଁ ଅନନ୍ଦହେଲା,
ରାମନାମ ଅର୍ଥ ଛଡ଼ିଣ ବୃକ୍ଷତାଳେ ବସିଲା ।
ଏରୂପେ ସାଧୁସଙ୍ଗରୁ ଯେ ନାମ ପ୍ରତେ ମିଳଇ,
ମୋଷ୍ଟିର କାହିଁ ଭିବବଇ ବାଣକୁ ରମାସାଇଁ ।
ତୋର ରାମନାମ ପାତକ ଧ୍ୱଂସନ୍ତୁଅଇ ଯେତେ,
ପାପୀ ପାପ କାହ୍ନିଁ କରବ ଏହାବଗୃଭି ଷଭେ ।
ସାଧୁଚରଣଦାସର ତୋନାମ ଅଟେ ପସସ,
ଏଣୁ ଭବସିନ୍ଧୁ ମଧ୍ୟରେ କରଅଛ ମୁଁ ଭେଳା ।
ପ୍ରକୃତମାନେ ଲହରୀଯେ ମାରୁଛନ୍ତି ଗୋସାଇଁ,
ଏଣୁଅସ୍ଥିର ମୋମନଯେ ଦୋଷବତାସ ବହ ।
ତହିଁରେ ଚନ୍ଦ୍ରକୁ ଉଦ୍ଧାର କରବ ନାରାୟଣ,
ଏଥକୁ ମୁହିଁଯେ ଜଣ୍ଠଛି ରଘୁନନ୍ଦନ ଶୁଣ ।

ତୁମ୍ଭନାମବିନୁ ମୋହର ଅନ୍ୟ ଭରସା ନାହିଁ,
କଳିଦୋଷ କ୍ଷମାକରିବ ଅହେ କମଳାସାଇଁ ।
ଭୃତ୍ୟସିନା ଦୋଷକରଇ ଅହର୍ନିଶି ଅନନ୍ତ,
ପ୍ରଭୁହୋଇ ଦୋଷ ଧରିବ ଏତ ନୁହେ ଉଚିତ ।
ଦୋଷରେ କାରଣ ଅଟଇ ନିର୍ଦ୍ଦୋଷ ନିରାକାର,
ମୋର ଅଟଇହେ ଶ୍ରୀହରି ଅପକ୍ୱ ଯେ ଶରୀର ।
ପ୍ରଭୁ ବୋଲିଣ କହୁଅଛି ଦୋଷକରିବ ନାଶ,
ସାଧୁଚରଣ ଦାସଠାରେ କରିବ ନିବାସ ।
ରାମନାମ ଗୋଟି ଅଟଇ ତତ୍ତ୍ୱ ସାର ସର୍କର,
ପିତ୍ତ ଉଗ୍ରବାୟୁ ମାନଙ୍କୁ ଏହୁ ନରୁରେ ସାର ।
କାମକ୍ରୋଧ ମୋହମାୟା ଯେ ଅହଙ୍କାରକୁ ଘେନ,
ଏତେକ ସଂସାରେ ମିଶିଣ ପିତ୍ତଜ୍ୱର ସେପ୍ରାଣୀ ।
ଦାନଧ୍ୟାନ ତୀର୍ଥ ତପଯେ ବ୍ରତ ନିରୋଧ କଲେ,
ଅବଶେଷ ମୂଳ ରହଇ ପୁଣ ବିସ୍ତାର କାଳେ ।
ତୁମ୍ଭ ରାମନାମ ଶର୍କର ଶୀତଳଯେ ଅଟଇ,
ଢିନକୁ ଢନଯେ ଅଦର କର ଯେହୁ ଭକ୍ଷଇ ।
ସଦ୍‌ଗୁରୁଯେ ନଟିକାଳ ଜଳ ଅମୃତ ରମ୍ଭା,
ଏମାନ ଏକତ୍ର କରିଣ ଯେବେ ସେବା କରିବା ।
ତେବେ ବ୍ୟାଧିମୂଳ ଉପାଡ଼ ତତ୍ତ୍ୱବିଜ ବୁଣଇ
ତୁମ୍ଭ କୃପାରେ ଏହୁଅଇ ଗୁଣକମଳା ସାଇଁ ।
ସାଧୁଚରଣକୁ କାରଣ କର ଏହୁପ୍ରକାରେ,
ତେବେ ଭବସିନ୍ଧୁକୁ ଡର ନଥିବଯେ ହୃଦରେ ।

ମୁକ୍ତି ଅଟେ ଗୃରିପ୍ରକାର ଲକ୍ଷନାହିଁ ମୋହର,
ନବଧା ଭକ୍ତିରେ ମୋମନ ବଳବଯେ ଶ୍ରୀଧର ।
ତୁମ୍ଭ କୃପା ଯେବେ ହୋଇବ ମୁହିଁ ଯିବ ଶରଣ,
ହୃଦେ ଚିନ୍ତଣ ତୁମ୍ଭନାମ କରିବଇଁ କୀର୍ତ୍ତନ ।
ସେବା କରିବ ତୁମ୍ଭ ପାଦ କର୍ଣ୍ଣେ ଶୁଣିବ ନାମ,
ବନ୍ଦନ ଅର୍ଚ୍ଚା ନିବେଦନ ସଖ୍ୟାଦାସ୍ୟ ପୂଜନ ।
ସଖାଭାବରେ ପ୍ରୀତକେନ୍ତୁ ସେବାକରନ୍ତି ହରି,
ସାଧୁଚରଣ ଦାସ ଚିତ୍ତ ଅବରତେ ସୁମରି ।
ଶଠପଣରେ ମୁଁ ତୁମ୍ଭର ହୋଇଅଛି ଗୋସାଇଁ,
ତୁମ୍ଭ ପାଦରେ ମୋମନ ଯେ କେବେ ରହଇ ନାହିଁ
ଲୋକ ଜାଣିବାରେ ତୁମ୍ଭର ମୁହିଁ ଅଟଇ ଜାଣ,
ହେନେ ଭଜିନାହିଁ ହୃଦରେ ତୁମ୍ଭ ପଦ୍ମ ଚରଣ ।
ଏଣୁ ଶଠମତି ମୋହର ହୋଇଅଛି ଗୋସାଇଁ,
ହୃଦଗତ କଥା ଜାଣହେ କିସ କହିବ ମୁହିଁ ।
ତୁମ୍ଭ ନାମ ଦୟାସାଗର ଦୀନଜନ ବାନ୍ଧବ,
ମୁହିଁ ଦୀନଜନ ଅଟଇ ମୋତେ କୃପାକରିବ ।
ସାଧୁଚରଣ ଦାସ ପ୍ରଭୁ କିଛି ଜାଣଇ ନାହିଁ,
ସଂସାର କୁହୁକରେ ଭ୍ରମ କରୁଅଛି କିପାଇଁ
ଲକ୍ଷ୍ମୀନୃସିଂହ ମହିମା ଯେ ତ୍ରିଭୁବନେ ଖ୍ୟାତ,
ମୋହଠାରେ କିପାଁ କରୁଣା ହେଉନାହିଁ ଅନନ୍ତ ।
କରକମଳେ ଶଙ୍ଖଚକ୍ର ବହିଅଛ ଗୋସାଇଁ
ପାପହର ମୋତ ନଚ୍ଛେଦ ଧରିଅଛ କିପାଇଁ ।

ମୂର୍ଖେ ଏମନ୍ତ ଷଡ଼ୈଶ୍ୱରଭ ଶୋଭ ବୋଲି ବହୁଛ,
ଭୃତ୍ୟନିମିତ୍ତ ବହୁଥିଲେ ପ୍ରଭୁ କରନ୍ତେ ମୋକ୍ଷ ।
ଏବେ ସାବଧାନ ହୁଅହେ ଥିଲ ନାହିଁଟି କାଳ,
ସାଧୁଚରଣ ଦାସ ଏବେ କରୁଅଛି କଟାଳ ।
ଧନ୍ୟ ନୀଳଗିରି କନ୍ଦର ଜଗନ୍ନାଥ ମୂରତି,
ତେତ୍ରିଶକୋଟି ଦେବଗଣ ନିତ୍ୟ ଝଟିଅଛନ୍ତି
ବଡ଼ ସିଂହଦ୍ୱାରଯେ ପରନ୍ତେ ନରଲୀଳା ଅନ୍ତର,
ଦେବଗଣ ପଟୋଆରଯେ ହେଲେ ବ୍ରହ୍ମାଶଙ୍କର ।
ଗରୁଡ଼ ବନ୍ଧ ମଣ୍ଡାଇଣ ସ୍ଥମ୍ଭରେ ସେଜଣାଇ,
ବ୍ରହ୍ମା ଗୃହବେଦ ଘେନିଣ ଅସି ଅଗେ ମିଳଇ ।
ପଛୁ ଦୁଷ୍ଟନାଇ ସଂସାର ପ୍ରଜନ୍ମା ସେବକହେଲ,
ଇନ୍ଦ୍ର ଦେବତାଙ୍କୁ ଘେନିଣ ପଟୁଆରେ ରହିଲ ।
ଦିବ୍ୟବେଶ ଜଗନ୍ନାଥଙ୍କ ମୂରତି ଧରିକରି,
କଟିରେ ଦିବ୍ୟ ପିତାମ୍ବର କର୍ଣ୍ଣେ କୁଣ୍ଡଳ ଧରି ।
ଛଞ୍ଚର ଡଡଣ୍ଟ କନ୍ଧରେ ଶୀରେ ମୁକୁଟ କାନ୍ତି,
ହୀରା ନୀଳା ମୋତି ମାଣିକ୍ୟ ସଙ୍ଗେ ବିରାଜୁଛନ୍ତି ।
ବାହେ ବାହୁଟି ଶୋଭାଧାଶେ କରେ ଛବ କଙ୍କଣ,
ଅଧର ପ୍ରବାଳ ନିନ୍ଦୁଛି ଦନ୍ତରେଖା ଦର୍ପଣ ।
କଟିରେ କିଙ୍କିଣୀ ପାଦରେ ନୂପୁର ବସଜଇ,
ହୃଦରେ କଉସ୍ତୁଭମଣି ପଦକଯେ ଶୋଭଇ ।
ନବୀନ କଳା ମେଘକୁଳଯେ ଜିଣିଅଛି ଶରୀର,
ଯେସନେ ଅଭିଷେକ କାଳେ ଶୋଭି ଜାନକୀବର ।

ପୀତବର୍ଣ୍ଣ ହୋଇ ଶ୍ରୀହରି ବଡ଼ସିଂହାରେ ବସେ,
ଅଙ୍ଗୁଷ୍ଟି ମାନରେ ମୁଦ୍ରିକା ଅପ୍ରମିତ ସାଜେ ।
ଶଙ୍ଖଚକ୍ର ଗଦା କମଳ ଚତୁର୍ଭୁଜେ ସୁନ୍ଦର,
କୋଦଣ୍ଡ କାଣ୍ଡ ଯେ ଅଛଇ ଯମଦାଢ଼ ବାମର ।
କନକ ପାଦୁକା ପଦ୍ମରେ ଶୋଭା ଦିଶଇ ହର,
କଳା ସମୁଦ୍ରରେ ବିଜୟ କଲ ନରକେଶରୀ ।
ଅତୋ ଅତୋ ବୋଲି ବନିତା କୁମରଯେ ଡାକଇ,
ଦେବଗଣଙ୍କୁ ଘେନ ଇନ୍ଦ୍ର ପଛ ଭୂଷି ରହଇ ।
ଏକାଦଶ ରୁଦ୍ର ଘେନିଣ ମହାଦେବ ବିଜୟ,
ନାରଦ ଆଦି ବ୍ରହ୍ମମୁନି କରନ୍ତି ଜୟଜୟ ।
ଗନ୍ଧର୍ବ ବୃନ୍ଦ ଘେନିଣମେ ହାହା ହୁହୁ ମିଳିଲେ,
ଅପସରା ଜଣ ଘେନିଣ ଉର୍ବଶୀ ଉଭାହୋଇଲେ ।
ନବଗ୍ରହ ଆସି ମିଳିଣ କରୁଛନ୍ତି ଜଣାଣ,
ବୃହସ୍ପତି ପାଞ୍ଜି କହନ୍ତି ବେଳକାଳ ଜାଣିଣ ।
ଚଉଷଠି କୋଟି କାତ୍ୟାନୀ ଯୋଗୀନୀଗଣ ମିଳିଲେ,
ଯୋଗ କରଣ ଆଦିପୁଣ ସପତାଙ୍ଗ ଝଟିଲେ ।
ଦଣ୍ଡ ନିମିଷ ମୁହୂର୍ତ୍ତିଯେ ଘଡ଼ି ଖଟିଲେ ଆସି,
ପ୍ରହର ସଞ୍ଚାଇ ବୟଇ ପୁଣି ଦିବସ ନିଶି ।
ମର୍ତ୍ତ୍ୟ ଦେବୀମାନେ ମିଳିଲେ ଯେଝା ଖଟଣିଠାରେ,
ଶ୍ରୀମ ଦେବୀମାନେ ରହିଲେ ସିଂହଦ୍ୱାର ପାଖରେ ।
ଜୟ ଜୟ ବାଣୀ ବୋଲିଣ ଭେଟୀ ବେଦନା କହ,
ହନୁମାନ ଦ୍ୱାରୀ ହୋଇଣ ତହିଁ ଜଗିଅଛଇ ।

ବେଢ଼ା କାଳିକା ମଙ୍ଗଳାଯେ ବେନକଲେ ଦର୍ଶନ,
ବିମଳା ଶ୍ରୀମୁରେ କହନ୍ତି ସବୁ ବିଷୟମାନ ।
ଲକ୍ଷ୍ମୀ ବଢ଼ଅ ଯେନକର ଅଯେ ସେବାଯେ କଲେ,
ସରସ୍ୱତୀ ବୀଣା ଯେନଣ ଅଳାପକଲେ ଧିରେ ।
ହେଙ୍ଗୁଳା ଦେବୀ ତାଙ୍କପଛେ କରନ୍ତିଯେ ଦର୍ଶନ,
ଖଣ୍ଡେହିଗଙ୍କୁ ଦୁଷ୍ଟଯାଇ କରପଦ ଯୋଡଣ ।
ବଳଦେବଙ୍କ ହସ୍ତ ଧର ଜଗନ୍ନାଥ ବିଜେସ୍ତେ,
ସୁଭଦ୍ରା ପଦ୍ମମାଳ ଯେନ ପୁଣି ଶ୍ରୀଅଙ୍ଗେ ଦିଏ ।
ଧୀରେ ଧୀରେ ପ୍ରଭୁ ବିଜୟେ ଜୟ ବିଜୟ ଦ୍ୱାରେ,
ସାଧୁଚରଣ ଦାସ ଖଟେ ସେହି ପଦ୍ମପଯୁରେ ।
ସମସ୍ତ ତୀର୍ଥମାନେ ପ୍ରଭୁ ମୂର୍ତ୍ତିବନ୍ତ ହୋଇଣ,
ଯେଝା ସେବାରେ ସେ ଖଟିଲେ ତୁମ୍ଭ ପଦ୍ମଚରଣ ।
ଗଙ୍ଗା ଯମୁନା ସରସ୍ୱତୀ ଋଷିକୁଲ୍ୟ ରେବା,
ଗୋଦାବରୀ ବଇତରଣୀ ଗୟା ଗଣ୍ଡକି ସେବା ।
କୃଷ୍ଣା ବେଣୀଯେ ବ୍ରହ୍ମାଣୀ ଚନ୍ଦ୍ରଭାଗା ସହିତେ,
ବିନ୍ଦୁସାଗରୁଯେ ମିଳଲେ ବହୁ ତୀର୍ଥ ସଙ୍ଗତେ ।
ସାଧବ ଅସିଣ ମିଳଲେ ମାଘ ପ୍ରୟାଗ ଯେନ,
ସରଯୂ କାବେରୀ ଅଇଲେ ମହାନଦୀ ଅଗ୍ରଣୀ ।
ସମସ୍ତ ତୀର୍ଥ ଋଷିଗଣ ଦେବଗଣ ଅଇଲେ,
ଜଗତ ଇଶ୍ବର ତୁମ୍ଭେଯେ ତୁମ୍ଭ ପାଦେ ସେବିଲେ ।
ତୁମ୍ଭେଯେ ସମସ୍ତଙ୍କ ପ୍ରଭୁ ତୁମ୍ଭ ଭୃତ୍ୟ ସମସ୍ତେ,
ସାଧୁଚରଣେ କହଇ ଏହା ଭୁବଣ ଚଳେ ।

ସମସ୍ତେ ମୂର୍ତ୍ତିବନ୍ତ ହୋଇ ଭକ୍ତ ହୋଇଅଛନ୍ତି,
ମହିମା ମହିମା ଡାକଯେ ସମସ୍ତ କରୁଅଛନ୍ତି ।
କଳାପଏଠରୁ ଶ୍ରୀ ହସ୍ତ ଜଗମୋହନେ ହୋଇ,
ମର୍ତ୍ତ୍ୟ ଦେବତାମାନେ ପୁଣ ଖଟିଲେ ବେଢିଯାଇ ।
ମାରକଣ୍ଡେଶ୍ୱର ପଲ୍ୟଙ୍କ ନେଇ ବଟମୂଳରେ,
ଜମ୍ବେଶ୍ୱର ତହିଁ ପୁପାଡ ଶୋଯାଇଲେଯେ ଭଲେ ।
ନୀଳକେଶ୍ୱର ଉପଧାନ ନେଇଦେଲେ ବହନ,
ଭୁବନେଶ୍ୱର ଲୋକେଶ୍ୱର ପାଟ ଝୀନବସନ ।
ସୋମେଶ୍ୱର ଲିଙ୍ଗ ଅର୍ପିଣ କର୍ପୂର ଧୂଳି ସିଞ୍ଚି,
ହଟକେଶ୍ୱରଯେ ଦର୍ପଣି ଯେନି ସଥରେ ବସି ।
ଗୁନ୍ଦୁଅ ଟାଣିଲେ ତ୍ରିକାଳବାସୀ ବନ୍ଧନ ନେଇ,
ଭୁଷଣ୍ଡ ପାରେଶ୍ୱର ନନ୍ଦୀ ଲିଙ୍ଗଙ୍କୁ ବେଢଗଲେ ।
ପାଏଡ଼ା ପକାନ୍ତି ମାର୍ଗରେ ଜୟ ଜୟ କରଣ,
ବଇତରଣୀ ଅଖଣ୍ଡଳ ମିଳିଲେ ସେହି ସ୍ଥାନ ।
କାମେଶ୍ୱର ପୁଷ୍ପେଶ୍ୱରଯେ ବୈଦ୍ୟନାଥ ସହିତେ,
ଗୃମର ଧବଳ ଭବଯେ ହୋଇଛନ୍ତି ସମୀପେ ।
କେଦାର କପିଳେଶ୍ୱରଯେ ଯକ୍ଷ ବେଲେଶ୍ୱରହିଁ,
ପୁଷ୍ପବୃଷ୍ଟି ସେହୁକରନ୍ତି ଶଯ୍ୟା ଉପରେ ନେଇ ।
ଅଷ୍ଟବେତାଳେଯେ ମାର୍ଗକୁ ମାର୍ଜନ କରୁଥାନ୍ତି,
ସୁବର୍ଣ୍ଣେଶ୍ୱରଯେ ଚନ୍ଦନ ସିଞ୍ଚା ତହିଁ କରନ୍ତି ।
ଅଗର ଧୂଳି ଦେଜଣଯେ ଝାଡେଶ୍ୱର ମିଳିଲେ,
ତ୍ରିବେଣୀଶ୍ୱରଯେ କୁଙ୍କୁମ ଜଳ ବେଗେ ସିଞ୍ଚିଲେ ।

ଚଣ୍ଡଭୂଜା ବଟେଶ୍ୱର ଭଗବତୀ ମିଳଣ,
ପୃଷ୍ଠିକୂମ୍ଭ ରଖି ମଙ୍ଗଳ ପାଠକରନ୍ତ ପୁଣ ।
ବାରସିଦ୍ଧ ତୁଲେ ଶୈବଣିକୋଟି ସିଦ୍ଧ ମିଳଲେ,
ଜମ୍ବୁ ଜମ୍ବୁ ବାଣୀ କରଣ ଅସି ଦର୍ଶନ କଲେ ।
ହନୁମାନ ଅଙ୍ଗଦ ପାଣ୍ଡବେ ଭୀଷ୍ମ ଦ୍ରୋଣ ସହିତେ,
ସୁଗ୍ରୀ ସୁଷେଣ ବଭୀଷଣ ଖଟିଛନ୍ତି ସମୀପେ ।
ପ୍ରହ୍ଲାଦ ଧ୍ରୁବ ଅକ୍ରୂର ଉଦ୍ଧବସେ ମିଳଲେ,
ଜଗନ୍ନାଥ ନାମ ଧରଣ ସେନ୍ତ ସ୍ତୁତିବାଦ କଲେ ।
ଷଡ଼ଋତୁ ଘେନ ମଳୟ ପବନସେ ମିଳଲ୍ଲ,
ଅଣଗୁଣ ବାସ୍ନା ଘେନଣ ଉଦ୍ୟାନସେ ଅସିଲ୍ଲ ।
ଚଣ୍ଡଦକୋଟି ରୁଦ୍ରଗଣ ଘେନଣ ସଙ୍ଗତର,
କଇଳାସପୁରୁ ଅଇଟଲ ବେଗେ ଚନ୍ଦ୍ରଶେଖର ।
ନନ୍ଦନ ବନ ତୋଷଣସେ ପାରିଜାତକ ଅଣି,
ଅସି ରଣ ଯୋଡ ହରଷେ ପ୍ରବେଶସେ ତକ୍ଷଣି ।
କୁବେର ଅସିସେ ମିଳଲ୍ଲ ଅଷ୍ଟନିଧି ଘେନଣି,
ଶଙ୍ଖନିଧି ପଦ୍ମନିଧିର ମୂଳେ ଅଛନ୍ତି ଜାଣ ।
ଜମ୍ବୁନଦ ବାସୀ ଅସିଲେ ଘେନଣ ପଦ୍ମମାଳ,
ଲକ୍ଷ୍ମୀଙ୍କ କଣ୍ଠେ ଲମ୍ବାଇଲେ ଦଶୁଅଛୁ ସୁତଳ ।
କସ୍ତୁରୀ ଘେନ ରଙ୍ଗନାଥ ଅସି ଦର୍ଶନକଲେ,
ନେପାଳ ଭୁବନ ଶ୍ରୀଧର ଅସି ବେଗେ ମିଳଲେ ।
ପଟଳେଶ୍ୱର ମହାଦେବ ମଧୁପାନସେ ଘେନ,
ଅମରେଶ୍ୱର ଅସିଣସେ ମିଳଲେ ତତକ୍ଷଣି ।

ମନ୍ଦାର ଭୁବନୁ ଅଇଲେ ବେଟଗ ମଧୁସୂଦନ,
ନରସିଂହ ସାର ମିଳଲେ ଘେନ ଧନୁ କୁସୁମ ।
ମଧୁ ଦେଶର ମାଧବଯେ ପୁଷ୍ପଗୃମର ଘେନ,
ପରମହଂସଯେ ମିଳଲେ ହେମଛତ୍ରଯେ ଘାଣି ।
କାମେଶ୍ୱରୀ ଦେବୀ ଅସିଣ ତାର ସେବାରେ ମିଳ,
କୁସୁମ ଦେଶୁ ଦୁର୍ଗା ଧର ଅଇଲେ ପଦ୍ମମାଳ ।
ଯାଜପୁରୁ ବିର୍ଜା ଅଇଲେ କରେ ଧୂବର୍ଣ୍ଣିମାଳ,
ସିଦ୍ଧେଶ୍ୱର ତାଙ୍କ ସଙ୍ଗତେ ଅଛନ୍ତିଯେ ନକର ।
ସାରଳା ଚଣ୍ଡିଯେ ମିଳିଲେ ଗନ୍ଧଚନ୍ଦନ ଘେନି,
ବାଙ୍କି ଶୃଙ୍ଗକାଇ ଅସିଣ କଲେ ଦର୍ଶନ ପୁଣି ।
ବସିଲ ବାଲୁଙ୍କେଶ୍ୱରଯେ କରପଦ ଯୋଡ଼ିଣ,
ହନନ୍ତୁ ବାସୁଦେ ଜଣାଣ କରୁଅଛନ୍ତି ଜାଣ ।
ଅଙ୍ଗ ବଙ୍ଗ ଦେବୀ ଅଇଲେ ଭଦ୍ରକାଳିକା ମୂଳେ,
ରଙ୍ଗଭୂମିରୁ ଅମ୍ବିକାଯେ ଭଇରବୀ ସଙ୍ଗରେ ।
ଅଗ୍ନିକୋଣୁ ଦେବା ଦେବୀ ଅସି ହେଲେ ସମସ୍ତ,
ମହାମାୟା ଅର୍ଘ୍ୟଥାଳିଯେ ଘେନ ଅଇଲେ ହସ୍ତ ।
ଦକ୍ଷିଣ ଅରଣ୍ୟ ଦୁର୍ଗାଯେ ନନ୍ଦକୁଟକୁ ଛୁଟିଲ,
ମହ୍ଲାର ଅଳାପେ ଗୀତଯେ ଗାଇ ମିଳିଲେ ଭଲେ ।
ମହ୍ଲିକାଦେବୀଯେ ମିଳଲେ ତାରିଣୀ ସଙ୍ଗର,
ନାରାୟଣୀ ଅସି ପ୍ରବେଶ ହୋଇଲେ ତତପର ।
ପ୍ରକାଶ ନନ୍ଦ ଚଇତନ ବଇଷ୍ଣବଯେ ଗଣ,
ଚଉଷଠି ମଲ୍ଲ ଯନ୍ତ୍ରଯେ ଧର ଆଳଟ ପୁଣ ।

ସନକାଦ୍ଧ ମୁନ ମିଳଣି କରୁଛନ୍ତଯେ ସୂତ,
ଅଶୋକ ବନରୁ ଦେଖାଯେ ଅସି ପ୍ରବେଶ ଯାତ ।
ଭଗବତୀ ଅସି ମିଳିଲେ ଅତହରଷ ହୋଇ,
ଚଣ୍ଡି ଗୃମଣ୍ଡାଯେ ବନ୍ଧୁଳ ଦେଖି ଖଟିଲେ ଯାଇ ।
ରୂପାଇ ସୁନାଇ ପୁଣଯେ ବରୁଣାଇ ଖଟିଲେ,
ବସନ୍ତାଇ ମିଳମିଳାଇଁ ଖଣ୍ଡେ ଦୂରେରହିଲେ ।
ଦ୍ୱୋ ତୀର୍ଥରୁ ଗଦାଧର ଅସି ହେଲେ ପ୍ରବେଶ,
ଦ୍ଧଷବତୀ ପୁରୁ ମିଳିଲେ ଦୁକ୍ଷେଶ୍ୱର ମହେଶ ।
କୁରୁକ୍ଷେତ୍ର ଦେଖି ଅଇଲେ ଅତ ହରଷ ହୋଇ,
ହେମଗିରିରୁ ହେମବତୀ ବେଗେ ମିଳିଲେ ଯାଇଁ ।
ଦେଖିଣ ନୃସିଂହ ଅଇଲେ କରେ ଖଡ୍ଗ ଧରିଣ,
ସତ୍ୟବାଦୀ ଗୋପୀନାଥଯେ ପଦ୍ମମାଳ ଘେନିଣ ।
ଟଙ୍କକେଳି ଦେଖୁ ଅଇଲେ ବରଞ୍ଚ ବେଗେ ପୁଣି,
ତୁମ୍ଭ ସେବାରେ ସେ ରହିଲେ ଅହେ ସାରଙ୍ଗପାଣି ।
ଦ୍ୱାରକାନାଥଯେ ବଦରି ନାରାୟଣ ମିଳିଲେ,
ଅଯୋଧ୍ୟା ଚନ୍ଦ୍ରକୁଣ୍ଡବାସୀ ଅସି ବନ୍ଦନ ହେଲେ ।
ତୁମ୍ଭସେବା ସେହୁ କରନ୍ତି ତୁମ୍ଭେ ଅଟଯେ ଭଏ.
ତୁମ୍ଭେ ଯେ ସେହୁସେ ଏକହୁ ବୋଲି ବେଦରେ କହେ
ତୁମ୍ଭ ସେବା ତୁମ୍ଭେ କରଯେ ଆନ କରିବ କେହୁ,
ନନାହୁକାରେ ତୁମ୍ଭ ରୂପ କିସ କହିବ ପ୍ରଭୁ ।
ଅଗ୍ନିରୁ ଅଗ୍ନି ଜାତହେଲା ପ୍ରାପ୍ତ ହୁଏ ପ୍ରକାଶ,
ଏକାଟେକ ସବୁଠାରେଯେ ନାହିଁ ଭିଣା ଦୋଷ ।

ଯାଧୁ ଚରଣ ଧ୍ୟାନ ପ୍ରଭୁ ହୋଇତ କରନ୍ତି ଧ୍ୟାନ,
ଏଣୁକରୁ ପ୍ରଭୁ ଜାଉଛି ହୃଦମଧ୍ୟେ ଛଣାଣ ।
ତୁମ୍ଭ ଶ୍ରୀଅପରାଧ କ୍ଷମାସେ କରିବଟି ଗୋସାଇଁ,
ତୁମ୍ଭ ଅଜ୍ଞାରେ ଗୋସାଇଁ କହଇ ମୋର ଅପ୍ରତ୍ତ ନାହିଁ ।
ଗୃଦ୍ଧେଶ୍ୱର ଭୁବନେଶ୍ୱରସେ ଯଜ୍ଞେଶ୍ୱର ମିଳନେ,
ମୁକ୍ତେଶ୍ୱର ଭନ୍ଦ ମଙ୍ଗଳା ଆସି ଦର୍ଶନ କଲେ ।
ଜମ୍ବୁଦ୍ୱୀପ ଦେବୀ ଦେବୀସେ ଆସି କଲେ ଦର୍ଶନ,
କାଞ୍ଚିପୁର ମଙ୍ଗଳାସେ ମିଳିଲେ ସାଭ ଯଣା ।
ହନୁମାନଙ୍କୁ ଗୃହଣ ସେ ଅନେକ ସ୍ତୁତି କଲେ,
ମୋତେ ଦ୍ୱାରେ ଗୁଡ଼ ଦଣ୍ଡସେ ମହାବଳୀରୁ ଭଲେ ।
ହନୁ ବୋଲନ୍ତି ପଛରେ ହାଲୁ କପି ରହିଲୁ ତୁହ ?
ଏମନ୍ତ ବୋଲି ବିଶ୍ୱରୂପ ହନୁମାନ ଦେଖାଇ ।
ଶୁଣି ଦେବୀ ଭୟ କରଣ ଅନେକ ସ୍ତୁତି କଲା,
ମହାପ୍ରଭୁଙ୍କର ଦାସରୁ” ବୋଲି ଦଣ୍ଡିମା ହେଲା ।
ଶୁଣି ଦୁଷ୍ଟାକର ପାବନ ଡାକୁ ହେଲାସେ ଯୁଡ଼,
ତହିଁ ମଙ୍ଗଳା ବେଗେ ଯାଇ ବହୁ ନିକଟେ ମିଳି ।
ଦୁନ୍ଦୁଭି ବାଜଇ ବାଜଇ ସରୁ ମହୁରି ବୀଣା,
ଢୋଲ ମୃଦଙ୍ଗସେ କଂସାଳ ଏକରୁ ଏକ ଜଣା ।
ତାଧିକ ଧିକ ବାଜୁଅଛି ଦମଘୋଷସେ ପୁଣ,
କାହାଳର ବାଦ୍ୟ ଶଙ୍ଖରେ ପୁରୁଅଛି ଗଗନ ।
ମଣିମା ମଣିମା ଡାକସେ ପ୍ରଭୁ ଅଛି ଅନେକ,
ଯାହିଁ ବିରୁଦ୍ଧ ଘଣ୍ଟାସେ କରନ୍ତି ଲକ୍ଷ ବାଦ୍ୟବାଳକ ।

ଏହିରୂପେ ଦେବା ଦେବୀଯେ ତିନିଭୁବନେ ଛନ୍ତି,
ଯେଝା ସେବାରେ ସେ ନିପୁଣହୋଇ ସେବା କରନ୍ତି
ଅନନ୍ତକୋଟି ବ୍ରହ୍ମାଣ୍ଡର ନାଥ ଅଟ ଗୋସାଇଁ;
ସାଧୁଚରଣଯେ କହଇ ତୁମ୍ଭ ଚରଣ ଧ୍ୟାଇ ।
ଜଗମୋହନରୁ ଶ୍ରୀରାମ ଚନ୍ଦ୍ର କଲେ ବିଜୟ,
ବଟମୂଳେ ଯାଇ ପ୍ରବେଶ ହେଲେ ଦେବାଧିରାଜ ।
ଅଟୋ ଅଟୋ ବୋଲି ଡାକଯେ ପଡୁଅଛି ନିରତ,
ତିନିଭୁବନ ଦେବାଦେବୀ କରୁଛନ୍ତି ହିକତ ।
ମଣିମା ମଣିମା ଡାକଯେ ପଡୁଅଛି ଗୋସାଇଁ,
ଶ୍ରୀଜଗନ୍ନାଥଯେ ହରଷ ହେଲେ ଏମନ୍ତ ଗୁହିଁ ।
ତୁମ୍ଭ ମହିମା କେଜାଣିବ ? ତୁମ୍ଭନାମ ଅନନ୍ତ,
କପାଳମୋଚନ ରହିଲେ ଅଘ କରଣ ହତ ।
ଏମନ୍ତେ ସମସ୍ତେ ସେବାରେ ରହିଥିଲେ ଗୋସାଇଁ,
ଶ୍ରୀଜଗନ୍ନାଥ ଠାଣିଦେଲେ ହରଷ ମନ ହୋଇ ।
ତିନିପୁର ଲୋକେ ମେଲାଣି ହୋଇ ତହୁଁ ଚଳିଲେ,
ଯେଯାହା ବେଦନା ଜଣାଇ ପାଦତଳେ ପଡିଲେ ।
ସମସ୍ତଙ୍କୁ ହସି ପ୍ରସନ୍ନେ ମେଲାଣି ଦେଲେ ହରି,
ତହୁଁ ଉଠି ଜଗମୋହନେ ମିଳିଲେଯେ ମୁରାରି ।
କଳାବିଏଟ ଲଗିଯାଇ ସିଂହାସନେ ପ୍ରବେଶ,
ଲକ୍ଷ୍ମୀଙ୍କି କୋଳରେ ଯେନଣ ରହିଲ ପୀତବାସ ।
ପଲ୍ୟଙ୍କଉରେ ପହୁଡିଲେ ଯାଇଁ କମଳାସାଇଁ,
ସାଧୁଚରଣ ଦାସ ଚିତ୍ତ ପ୍ରଭୁ ଖଟଇ ତହିଁ ।

ଏମନ୍ତ ମହିମା ତୁମ୍ଭର କେହ୍ନ କରବ ଅନ୍ତ,
ସବ ଅବଶେଷେ ପ୍ରବେଶ ହୋଇଲନ୍ତି ପ୍ରଭାତ ।
ନରଲୋକଙ୍କ ସେବା ପୁଣ ଲାଗିଲନ୍ତି ଗୋସାଇଁ,
ବଡ଼ପ୍ରଅର୍ପିଣଯେ ଖଟିଲେ ଯେଝା ସେବାରେ ରହି
ଶଙ୍ଖଧ୍ୱନି ସବୁ ମନୁଷ୍ୟ ପୂରଇ ଘନ ଘନ,
ବାଦ୍ୟ ମର୍ଦ୍ଦଳଯେ ବାଜଇ ଘଣ୍ଟ କାହାଳ ଜାଣ ।
ଭେରୀ ମୃଦଙ୍ଗ କଂସାଳଯେ ତାଧିକ ଧିକ ବାଜେ,
ବୀଣା ତମ୍ବୁର ମନ୍ଦିରଯେ ବଂଶୀ ସୁସ୍ୱରେ ବାଜେ ।
ହରି ହରି ଶବଦରେଯେ ଦଗ ଉଚ୍ଛୁଳେ ପୁଣ,
ପୂର୍ଣ୍ଣ ହୋଇଅଛି ନୀଳଗିରି କ୍ଷେତ୍ର ପୁରୁଷୋତ୍ତମ ।
ନିର ଅବକାଶେ ବ୍ରାହ୍ମଣେ ସ୍ନାନ ମାର୍ଜନା ସାରି,
ଭକ୍ତଜନେ ଯାଇ ଖଟିଲେ କଟର ଗୃମର ଧରି ।
ଦ୍ରବ୍ୟ ବସ୍ତ୍ରମାନ ପିନ୍ଧାଇ ଗନ୍ଧଚନ୍ଦନ ଦେଲେ,
ତୁଳସିମାଳଯେ ହୃଦରେ କଣ୍ଠେ କୁଣ୍ଡଳ ଭଲେ ।
ଶିରେ ନାନାଜାତ କୁସୁମ ଚୂଳ ଗର୍ନ୍ତିଲେ ନେଇ,
କରଡ଼ିଆ ମାଳ ମାନଯେ ବକ୍ଷସ୍ଥଳେ ଲମ୍ବାଇ ।
ନାନାପ୍ରକାର ମଣୋହି ଦ୍ରବ୍ୟମାନ ବାଢିଲେ,
ପୂଜକମାନେ ପୂଜାକରି ହରିଙ୍କି ସମର୍ପିଲେ ।
ମଣୋହି ସରନ୍ତେ ଅଳତି ବନ୍ଦାପନାଯେ ଧୂପ,
ନାନା ପ୍ରକାରେ ରସପଣା ଲାଗିଲ ଫଳ ଅପ ।
ତହିଁ ଉତ୍ତାରୁ ବଡ଼ଅଯେ ଲାଗି କରନ୍ତି ନେଇ,
ଏହିରୂପେ ନିତ ହୁଅଇ ତହିଁ କମଳା ସାଇଁ

ପଞ୍ଚ ଅବକାଶ ତ୍ରୁପ ହୁଅଇ ଏହି ରୂପେ,
ସାଧୁଚରଣ ଦାସ ଛାଡ଼ି ଖଞ୍ଜିଅଛି ସମୀପେ ।
ଯେଉଁ କର୍ଣ୍ଣ ପଥେ ତୁମ୍ଭର ନାମ କରେ ଶ୍ରବଣ,
ଯମଭୁବନେ ଉତ୍ସବ ଯେ ହୁଅଇ ସେହୁ ଦିନ ।
ଡିଣ୍ଡିମ ଘୋଷ ଯେ ବାଜଇ ହରି ଶବଦ ଘେନ,
ତାର କଲୁଷ ଅଘ ଅନ୍ତର ହୁଅଇ ଯେ ତକ୍ଷଣି ।
କୁଳକୁ ପବିତ୍ର କରଇ ତିନିଭୁବନେ ଖ୍ୟାତ ।
ରଉରବ ନର୍କୁ ପିତୃଙ୍କୁ ଉଦ୍ଧରଇ ତ୍ୱରିତ ।
ତୁମ୍ଭ ନାମରେ ଯେ ଏତେକ ସ୍ୱାମୀ ଅଛଇ ଗୁଣ,
ଏଣୁ ଆଶ୍ରା କରି ଅଛଇ ଦାସ ସାଧୁଚରଣ ।
ଅପାର କରୁଣା ସାଗର ପୁଣ ଅଟ ଗୋସାଇଁ,
ତୁମ୍ଭ ନାମ ଭବସାଗରେ ସେତୁ କରି ଅଛଇ ।
ଭକ୍ତମାନେ ସଦବଯେ ହୋଇ କରନ୍ତି ବଳ,
ଏଣୁ କରି ନାଥ ସେତୁ ଯେ ସତୁ ଅଛଇ ଭେଳ ।
କୁମ୍ଭିର ପରାୟେ ତାହାକୁ ରଙ୍କ ପେକ୍ଷିଲେ ଜରଇ
ତେବେ ମନମତ୍ତ ବାରଣ ନାଥ ହେବ ଉଦ୍ଧାର ।
ତହିଁରେ ଜ୍ଞାନ ଅଙ୍କୁଶକୁ ଦେଇ ମସ୍ତକେ ମାରି,
ଅଗ୍ରତ କାରଣ ଗମନ କରାଇବ ମୁରାରି ।
ତେତେକେ ସେହି ଗତି ନାରଣ ମନ ଯିବ ନନ୍ଦନ,
ଏହିରୂପେ କରି ତାରିବ ଅହେ ଜଗମୋହନ ।
ସାଧୁଚରଣ ଦାସ ପ୍ରଭୁ ଯେବେ ସେବକ ତୋର,
ତେବେକ ଉଦ୍ଧାରି କରିବହେ ! ଅହେ କମ୍ବୁଳାବର ।

ମୋହ ଦର୍ପସ୍ପୃହାଭଗନ ହୋଇଅଛି ମୁରାର,
ତାଙ୍କୁ ଅହଙ୍କାରି ଭାଗଙ୍କୁ କରିଣଯେ କେଶବ ।
ତେଣୁ ଜନ୍ମମନ୍ଦ ଅନ୍ତ ଚଳନ ନାହିଁ ନକରି ଚିନ୍ତା,
ଏଗାରେ କୃତାର୍ଥ ହୋଇବ ଏଣୁ ହେ ଜଗନ୍ନେତା ।
ପୂର୍ବେ ଏଣୁ ଭାରତବର୍ଷ ମଣ୍ଡଳେ ଏକ ଶୁଅର ଥିଲା,
ବ୍ୟାଧ ଆଚରଣ କରିଣ ନିତ୍ୟ ପଶୁ ବଧିଲା ।
ଯିସିତ ଗ୍ରାନକରଣଯେ କରୁଥାଇ ବ୍ୟାପାର,
ଅହ୍ଲାର ନିଦ୍ରା ମଇଥୁନ ଏହି ବିଗ୍ରହ ତାର ।
ଧର୍ମ ବେଲଣ କେଉଁ କଥା ନଜାଣଇ ଗୋସାଇଁ,
ନାନା ବର୍ତ୍ତିରଭ କରଣ ନାନା ପଶୁ ମାରଇ ।
କେବଳ ଚଣ୍ଡାଳ କର୍ମରେ ହୁଅଇ ତତପର,
ନିଛମାୟା କପଟରେ ସେ କାଟୁଥାଇନ୍ତି କାଳ ।
ଗୁରୁ ଲଘୁ ସେହୁ ବିଗ୍ରହ ନକରଇ ଗୋସାଇଁ,
ନଗ୍ନବଧି ସେହୁ ଭ୍ରମିଣ ଜନ୍ତୁଠାରେ ହିଂସଇ ।
ଏମନ୍ତେ କେତେଦିନ ଗଲାକାଳେ ଦୁର୍ଭାଗ୍ୟ ଭେଟ,
ଶୁକମୁନି ତପ କରନ୍ତି ବଦରିକା ନିକଟ ।
ଯହିଁ ଅନେକ ଶୁକପକ୍ଷୀ କ୍ରୀଡ଼ା କରନ୍ତି ପୁଣି,
ତହିଁଯାଇ ସେହୁ ମିଳିଲା ନଳ ଅଠାଯେ ଘେନି ।
ନଳ ଲଗାଇଣ ଏକଇ ଶୁଆ ଧଇଲା ତହିଁ,
ଋଷିଙ୍କ ଦୃଷ୍ଟିଯେ ପଡ଼ିଲା ତାର ଉପରେ ଯହିଁ ।
ବଦ୍ରିକବ୍ୟାସ ସୂତ ମଳରେ କରୁଛନ୍ତି ବିଗ୍ରହ,
ଅମ୍ଭ ଦେଖୁ ଦେଖୁ ପକ୍ଷିର ହେଲା ସଂହାର ।

ଏମନ୍ତ ବୋଲିଣ ଭଗତ ଭକ୍ତଙ୍କୁ ସେ ଡାକିଲେ,
ତାଙ୍କୁ ସମୀପେ ବସାଇଣ ଧର୍ମମାର୍ଗ କହିଲେ ।
ମୃତ୍ୟୁର ଭୟ ଦେଖାଇଣ ଧର୍ମମାର୍ଗ କହି,
ଏହିତୋର କାଳେ ଶତ୍ରୁ ଯେ ହୋଇଛନ୍ତିରେ ଭାଇ
ଏହାଙ୍କୁ ତୁହି ଯେ ନମାର ଏବେ ମୋବୋଲକର
ଆମ୍ଭସଙ୍ଗେ ରହି ଅମୃତ ନାମ କର ଅହାର ।
କିପାଁ ବୁଲୁଅଛୁ ସଂସାରେ ଅନେକ ଦୁଃଖସହି,
ନିର୍ଚ୍ଚିନ୍ତ ହୋଇ ଏହିଠାରେ ବସିଥାଅ ଯେ ତୁହି ।
ଏହି ଶୁକକୁ ପଢ଼ାଇବୁ ଏହିକି କର୍ମ ତୋହର,
ଅନ୍ନ ବସ୍ତ୍ରଯେ ନକର ଅମ୍ଭେ ଦେବା ଅଧାର ।
ଶୁଣି କିରାତଯେ ବୋଲଇ ମୁହିଁ ଜନ୍ମ ମୂରୁଖ,
କିସ ପଢ଼ାଇବ ଏହାଙ୍କୁ କହିଦେବା ହେ ଶୁକ ।
ଶୁଣି ଶୁକଦେବ କରୁଣା ତାଙ୍କୁକଲେ ସେଠାରେଁ,
ରାମନାମ ଦୀକ୍ଷା ଦେଇଣ ଶୁକଙ୍କୁ ପଢ଼ାଇ ।
ଶୁକ ଉଦ୍ଧାରଯେ ହୋଇଲା ରାମନାମ ବୋଲନ୍ତେ,
ପକ୍ଷୀ ଜନ୍ମ ତାର ଛେଡ଼ିଣ ଗଲା ଗଗନ ପଥେ ।
ବନ୍ଧନୁ ମୁକତ ହୋଇଣ ସେହି ଗତି ପାଇଲା,
ଏହାଦେଖି ବ୍ୟାଧ ଅପଣା ମନେ ବିଚାର କଲା ।
ପକ୍ଷୀଜନ୍ମ ଦେଖୁ ଦେଖୁ ଯେ ଏଥୁ ହେଲା ଉଦ୍ଧାର,
ମୁହି ଏବେଯାଇ ନିଷ୍ଠନ୍ତେ ଭଜିବଇ ଶ୍ରୀଧର ।
ଏମନ୍ତ ବିଚାରି ଅହାର ତ୍ୟାଗ କଲାସେ ପୁଣ,
ଯୋଗ ସମାଧି ଲୟକରି ରାମନାମ କୀର୍ତ୍ତନ ।

ପ୍ରେମରେ ପୁଲକ ହୋଇଣ ସ୍ତବ୍ଧ ଚିନ୍ତା ସେ କଲା
ଦେହଛାଡ଼ି ଅନ୍ତେ ବୈକୁଣ୍ଠ ପୁରକୁ ସେ ଚଳିଲା ।
ଏମନ୍ତ ସାଧୁଙ୍କ ମହିମା ପତିତଙ୍କୁ ତାରିଲେ,
ସାଧୁଚରଣ ଦାସ ଭବ ଗତ ଯାଇଛି ଭଲେ ।
ଏହିରୂପେ କେତେ କାହାକୁ କରିନାହଁ କାରଣ,
କରୁଣାସାଗର ଏଣୁ ଯେ ବୋଲାଅଛି ଆପଣ ।
ସଫଳ ଯାଦବ ନନ୍ଦନ ଅକ୍ରୂର ଚିନ୍ତାକଲା,
ଗୋପରୁ ଆଣନ୍ତେ ମଥୁରା ନିକଟରେ ମିଳିଲା ।
ଜଳମଧ୍ୟରେ ସେ ଦର୍ଶନ କଲା ନିଜ ଶରୀର,
ଭକତଭାବରେ ବଶହେ ଅହେ ମୁରଲୀଧର ।
ଉଦ୍ଧବଶାନ୍ତ ଯୋଗପନ୍ଥ ଅସନ ସେହୁକଲା,
ଅର୍ଜୁନ ଭ୍ରମଣ ଗୋଲକ ଭେଦ ସେହୁ ପାଇଲା ।
ବ୍ରହ୍ମା କୁମରଙ୍କୁ ପ୍ରସନ୍ନ ପୂର୍ବେ ହୋଇଲ ହରି,
ହଂସରୂପେ ତାଙ୍କୁ ଉଦ୍ଧାର ଜ୍ଞାନ ଦେଲ ମୁରାରି ।
ଚତୁର୍ବିଂଶ ଗୁରୁ କହିଣ ଅବଧୂତ ତରିଲେ,
ତୁମ୍ଭଙ୍କୁ ସମସ୍ତ ଶରୀରେ ଦୃଢ଼ ସେହୁ ଦେଖିଲେ ।
ତୁମ୍ଭ କୃପାରେ ଏମନ୍ତ ଯେ ହୁଅଇଛି ମୁରାରି,
ତୁମ୍ଭେ ଅବଧୂତ ଅଭେଦ ଏଣୁ ସାରଙ୍ଗଧାରୀ ।
ମୁଚକୁନ୍ଦ ଯୋଗ ପିଠରେ କରିଥିଲାଯେ ଲୟ,
କାଳେ ପ୍ରସନ୍ନଯେ ତାହାଙ୍କୁ ହେଲ ଦେବାଧିରାୟ ।
ଦର୍ଶନ ପାଇଣ ସୁଗତି ପାଇଲେ ମହାମୁନି,
ବିଶ୍ୱାମିତ୍ର ବ୍ରହ୍ମମୁନିଯେ ହେଲେ ତୁମ୍ଭଙ୍କୁ ଭକ୍ତି ।

ସୂତ କୌଶିକ ଦୁଷ୍ଟଙ୍କ ଶୂଦ୍ରଘରେ ଜନମି,
ତୁମ୍ଭ ରାମନାମ ଚିନ୍ତି ହେଲେ ତପ ବ୍ରହ୍ମମୁନି ।
ବ୍ୟାସ ମୁନିଙ୍କ ସେବାକରି ସେହୁ କୃତାର୍ଥ ହେଲେ,
ତୁମ୍ଭ ଭକ୍ତ ସେବା ଏମନ୍ତ ସାଧୁଚରଣ ବୋଲେ ।
ଜରାସନ୍ଧ ଘରେ ଅନେକ ରଜା ହୋଇଲେ ବନ୍ଦ,
ପୂର୍ଣ୍ଣି ଅଦ୍ଭୁତ ସେକରନ୍ତେ ନୃପ କଦମ୍ବ କାନ୍ଦ ।
ଅରତେ ତାଙ୍କ ରାଣୀମାନେ ଚିନ୍ତାକଲେ ତୁମ୍ଭଙ୍କୁ,
ତାହାଙ୍କ ଆରତ ଜାଣି ରକ୍ଷାକଲ ନୃପଙ୍କୁ ।
ଜରାସନ୍ଧକୁ ଭୀମ ହାତେ ବଧକଲ ଯେ ହରି,
ନୃପତିଗଣ ମୁକୁଳାଇ ଦେଲ ନବରେକବାରି ।
ଏହବୁ ଯେ ମୋତେ ସଂସାର ବନ୍ଧକୁ ଯେ ଉଦ୍ଧର,
ସାଧୁଚରଣ ଦାସ ଠାରେ ମାୟା କିପାଇଁ କର ।
ତୁମ୍ଭସେବା ଯେହୁ କରଇ ତାକୁ ଅପୂର୍ବ କିସ,
ଧର୍ମ ଅର୍ଥ କାମ ମୋକ୍ଷ ଯେ ସ୍ୱଇଚ୍ଛରେ ପ୍ରବେଶ ।
କଳାପ ପାଣିନୀ ଆଦି ଯେ ନବ ବ୍ୟାକରଣ,
ଶ୍ରୁତ ସ୍ମୃତି ଅଦି ଗ୍ରନ୍ଥ ଯେ ଅଷ୍ଟାଦଶ ପୁରାଣ ।
ରାମାୟଣ ଭାଗବତ ଯେ ଭାରତ ଅଦି ଯେତେ,
ସନ୍ଧି ଶବ୍ଦ ଯେ ଅନ୍ୟାଦେ କୃତ କାରକ ମତେ ।
ସମାସ ତଦ୍ଧିତ ଅନ୍ତ ଯେ ସପ୍ତ ବୃଧି ବର୍ତ୍ତରି,
ନାଟକ କାବ୍ୟ ଆଦି ଯେତେ ନ୍ୟାୟ ଶାସ୍ତ୍ର ଛାଡ଼ି ।
ବେଦାନ୍ତ ଗିତା ସାର ଅଦି ତନ୍ତ୍ରଶି ଯନ୍ତ୍ରରେ,
ସତ୍ୟବୀଜ ଏକା ଅକ୍ଷର ମନ୍ତ୍ରରାଜ ଗୋଚରେ ।

ଏତେକ ବ୍ରହ୍ମଜ୍ଞାନଧ୍ୟାନ ଜୀବ ପରମ ସାଧନା,
ଇଙ୍ଗଳା ପିଙ୍ଗଳା ଛନ୍ଦେ ଶିଶୁ ସୁନାଶ ଯାଧନା ।
ପୂରକ କୁମ୍ଭକ ରେଚକ ବ୍ରହ୍ମ ଗାୟତ୍ରୀ ସାର,
କାମ ବୀଜ କାମ ଗାୟତ୍ରୀ ଅପନଯେ ବିଗ୍ରହ ।
ଭୂତ ଶୁଦ୍ଧି ଅଙ୍ଗନ୍ୟାସେ କରନ୍ୟାସ ବନ୍ଧ;
ଅଶାଶୁଦ୍ଧି ପୁଣ ଅଟଇ ଜୀବନ୍ୟାସ ଉଚ୍ଚାର ।
ପଞ୍ଚାଶ ବର୍ଣ୍ଣ ଭେଦ ପୁଣ ଅଜଗାଯେ ଅବନା,
ନାରାୟଣ ମନ୍ତ୍ର ଅଧ୍ୟେଯ କରନ୍ତି ଉପାସନା ।
ନାରଚ ଶଙ୍ଖ ଚକ୍ର ଅର୍ଦ୍ଧ ମୁଦ୍ରା ଛନ୍ଦ କରନ୍ତି,
ମର୍ତ୍ତ୍ୟ ଯନ୍ତ୍ର ତନ୍ତ୍ର ଅଧ୍ୟେଯ ଏହା ବିଗ୍ରହୁ ଆନ୍ତି ।
ତୁମ୍ଭ କୃପାରେ ଏ ତୁମ୍ଭର ଭକ୍ତି ଅଦ୍ଭୁତ ସିନା,
ସାଧୁଚରଣ ଦାସ ଭାବେ ହୃଦେ ରାବଣ ଜଣା ।
ରାବଣ ଅଭିଶ୍ୱ ବନାଯେ ମୋତେ ନରୁଚେ କେନ୍ଦ୍ର,
ତାହାର ଭୃତ୍ୟ ମୁଁ ସର୍ବଦା କାଳେ ଦ୍ରୋହ ଅଛଇ ।
ଏବେ ମାୟା ଫାନ୍ଦେ ପଡ଼ିଣ ଛୁଡ଼ ଅଛଇ ଜାଣ,
ମାୟା କାଟିଣ ମୋମନକୁ ନିଅ ସୀତା ରମଣ ।
ମୁଁ ଯେବେ ତୁମ୍ଭର କଙ୍କର ଏହା ଜାଣ ମୁରହ,
ମୋର ମନ ତୁମ୍ଭ ପାଦେ ରହୁ କୋଦଣ୍ଡଧାରୀ ।
ଅପରାଧ ଥିଲକୁ ଦଣ୍ଡଯେ ପାଉଅଛୁ ଗୋସାଇଁ,
ଏବେ କ୍ଷମାକର ନାଅହେ ଅହେ କମଳାସାଇଁ ।
ମୁକ୍ତି ଏତେ କୁମାର୍ଗ କର୍ମରେ ଜଡ଼ଅଛୁ,
କୁମାର୍ଗ ଦେଖାଇ ନେବହେ ଦଶରଥର ବସି ।

ସିଦ୍ଧଅଙ୍ଗ ବଣା ଦଶଇ ମାୟାଅଙ୍ଗ ଯନ୍ତ୍ରନ୍ତ୍ର,
ସାଧୁଚରଣଙ୍କୁ କାର୍ଯ୍ୟଣ କହୁଛନ୍ତି ଯେ କେମନ୍ତେ ।
ଏଥକୁ ଜ୍ଞାନ ମାର୍ଗଯେ କହ୍ନଦେବ ଗୋସାଇଁ,
ନୋହିଲେ ଏଜ୍ଞାନ ପଣ୍ଡିତ ହୋଇ ଅଛଇ ରହି ।
ସାଧୁଚରଣ ଦାସ ସ୍ତମ୍ଭ କରୁଅଛି ଭାବନା,
କିରୂପେ କାରଣ କରିବ ଅହେ ହିରଣ୍ୟ ଜଣା ।
ଗୋପେ ଜାତ ହୋଇ ଗୋପିଙ୍କ ମନ ହରିଛ ଦେବ,
ଦେବ ବରିଷ୍ଠ କୋଟି ଯୋଗ କରୁଅଛଯେ ଲବ ।
ବ୍ରହ୍ମ ନିଗି କଲ ରାହାସ ମଣ୍ଡଳରେ ବିସ୍ମର,
ଯୋଗମାୟା କରି ଏମନ୍ତ କଲ ମୁରଲୀ ଧାରୀ ।
ଦନ୍ତିବ ମାୟାଯେ ଅଘୁଷୀ ରୁଦ୍ରେ ମାୟା କରଣ,
ବ୍ରହ୍ମ ମାୟାକରି ମାନବ ବରିଷ୍ଠବ ଦୁର୍ଗେଣ ।
ମୁନିଙ୍କ ଦୟାଯେ କରଣ ମୃଗ ଅହାଲ୍ୟନ୍ଦନୀ,
କୀଟ ପତଙ୍ଗ ସ୍ଥାବରଯେ ଜଙ୍ଗମ ଧାତା ଘେନ ।
ଏହିରୂପେ ଚତୁର୍ଦ୍ଦଶଯେ ମାୟା କଲ ରଚନା,
ଗୋପୀଙ୍କ ସଙ୍ଗେ କ୍ରୀଡ଼ାକରି ରାଧା ମନକୁ ଜଣା ।
ଏମନ୍ତ ପ୍ରକାର ତୁମ୍ଭର ମାୟାଅଟେ ଗୋସାଇଁ,
ଗୋପୀଙ୍କଠାରେ ତୁମ୍ଭ ମନ ସର୍ବଦାଯେ ରହଇ ।
ଗୋପୀ ବଶକରି ଅଛନ୍ତି ପ୍ରେମ ଅଲିଙ୍ଗନରେ,
ଏଣୁ ରହିଛି ତୁମ୍ଭମନ ଯାଇ ଗୋପୀଙ୍କ ଠାରେ ।
ତହିଁକି ଭରସା ମୋହର ବଳଅଛି ଗୋସାଇଁ,
ତୁମ୍ଭଠାରେ ମୋର ମନଯେ ସ୍ତମ୍ଭ ରହିବ ଯାଇଁ ।

ଏହି କାୟା ହବା ମୋହର ଅନ୍ୟ ବସ୍ତୁ ନାହିଁ,
ସେହ ଦେବା ମୁହିଁ ଶ୍ରୀରାମ ଘଳା ବସ୍ତୁରୁ ଥାଇ ।
ଘନ ବନାଶ୍ରୟ ଅନ୍ୟଠାରେ ଅଛଇ ପ୍ରୟୋଜନ,
ସାଧୁ ଚରଣଙ୍କୁ କାରଣ କର ଜଗମୋହନ ।
ଆତ୍ମା ରକ୍ଷଣ ନିମନ୍ତେ ଯେ ବିଷ୍ଣୁ ପଞ୍ଜର ବୋଲି,
ବ୍ରହ୍ମାଣ୍ଡ ପୁରାଣେ ଉକ୍ତ ଏ ବ୍ରହ୍ମା ନାରଦ ଭାଳ ।
ଅବ୍ୟକ୍ତ ଛନ୍ଦ ରୁଦ୍ର ଋଷି ପରମ ଯେ ପୁରୁଷ,
ଦେବତା ବେଜ ଯୋଗଦେବ ଜଳେ ତହିଁ ବିନ୍ୟାସ ।
ବିଷ୍ଣୁ ପଞ୍ଜର ପାରାୟଣ ଉଗ୍ରଦଜ ଅଟଇ;
ଘୋର ଭୟ ନାଶ କରଣ ମହା ବ୍ୟାଧି ନାଶଇ ।
ବ୍ରହ୍ମ କ୍ଷତ୍ର ବୈଶ୍ୟ ଶୂଦ୍ରାଦି ଯେହୁ କରଇ ଚିନ୍ତା,
ତାହାଙ୍କ ଆତ୍ମା ଏ ରକ୍ଷଇ କୃପାରେ ଜଗନ୍ନେତା ।
ଗୋବିନ୍ଦ ଚରଣ ରଖନ୍ତୁ ଜାନୁ ଏ ତ୍ରିବିକ୍ରମ,
ଉଦର କେଶବ ରଖନ୍ତୁ କଣ୍ଠରେ ଜନାର୍ଦ୍ଦନ ।
ନାଭିକମଳ ଅଚ୍ୟୁତ ଏ ରଖେ ଗୁହ୍ୟ ବାମନ,
ଉରରେ ପଦ୍ମନାଭ ରଖି ହର ପୃଷ୍ଠରେ ଜାଣ ।
ବାମହାତେ ବିଷ୍ଣୁ ରଖନ୍ତୁ ମଧୁସୂଦନ ଦକ୍ଷେ,
ବାହୁ ବେନି ବାସୁଦେବ ଯେ ବିଷ୍ଣୁ ଉଦରରୁ ରକ୍ଷେ ।
କଣ୍ଠକୁ ନରହରି ରଖିବେ କୃଷ୍ଣ ମୁଖ ରଖନ୍ତୁ,
ହୃଷୀକେଶ ନାସା ରଖିବେ ମାଧବ ରଖେ ଶ୍ରୁତି ।
ହୃଦେ ନାରାୟଣ ଲଲାଟେ ରଖେ ଗରୁଡଧ୍ୱଜ,
ବିଷ୍ଣୁ ରଥ ଚଳେ କେଶବ କପୋଳରେ ଏ ହେଜ

ପୂର୍ବେ ପୁଣ୍ଡରୀକାକ୍ଷ ରକ୍ଷେ ଅଗ୍ନି କୋଣେ ଶ୍ରୀଧର,
ଯମେ ନରସିଂହ ନୈଋତେ ରଖନ୍ତେ ଦାମୋଦର ।
ପଶ୍ଚିମେ ଶ୍ରୀରାମ ରଖିବେ ସମୀରେ ପୀତବାସ,
ଉତ୍ତରେ ଗଦାଧର ରଖି ଈଶାନ୍ୟରେ ମହେଶ ।
ସୁଦରଶନ ଆକାଶରେ ପାତାଳରେ ଅନନ୍ତ,
ଏମନ୍ତ ପ୍ରକାରେ ରକ୍ଷା ଯେ କର କମଳାକାନ୍ତ ।
ବିଷ୍ଣୁ ପଞ୍ଜରର ଉପମା ଏ ଶୁଣି ପାତକ ଯାଇ,
ରାଜଦ୍ୱାରେ ଚିନ୍ତାକଲେ ଯେ ଘୋର ବିପତ୍ତି ଦହି ।
ଭବସିନ୍ଧୁ ଘୋର ତରନ୍ତି ଶତ୍ରୁ ବ୍ୟାଘ୍ର ଡାକିନ,
ଏଭୟରୁ ରକ୍ଷାକରନ୍ତି ପ୍ରଭୁ ସାରଙ୍ଗପାଣି ।
ଦିବାରେ ସୂର୍ଯ୍ୟ ଯେ ରଖଇ ନିଶାରେ ନିଶାକର,
ଜଳେ ବରାହ ଯେ ରଖନ୍ତି ସ୍ଥାନେ ରଖେ ଶ୍ରୀଧର ।
ଅରଣ୍ୟେ ନୃସିଂହ ରଖିବେ ଗୋନେ ରଘୁନନ୍ଦନ,
ସର୍ପ ଅଦ କାଳମାନେ ଯେ ଧ୍ୱଂସ ହୋଇବେ ଜାଣ ।
ବହୁତ ସମ୍ପଦ ହୋଇବ ଭକ୍ତମାନେ ଶୁଣିଲେ,
ଅପୁତ୍ରିକେ ପୁତ୍ର ଲଭିବେ ନିର୍ଧନେ ଧନ ମିଳେ ।
ବନ୍ଧ ବିପତ୍ତି ନାଶଯିବ ଯେହୁ କାଷ୍ଠାରେ ଶୁଣେ,
କାମନା କରଣ ହୃଦରେ ଯେହୁ ବିବେକ ଗୁଣେ ।
ତେବେ ତାର ସିଦ୍ଧି ହୋଇବ ମହା ବିପତ୍ତି ନାଶ,
ଏହି ଜଣାଣପୟୋଧିରେ ଅଟଇଟି ପିୟୂଷ ।
ସାଧୁଚରଣ ଦାସ କଷ୍ଟ ନରସିଂହ ହରିବେ,
ଏଭବସାଗରୁ ତାରେ ଯେ ଲକ୍ଷ୍ମୀରମଣ ଧରିଛନ୍ତି ।

ତ୍ରିସନ୍ଧ୍ୟାରେ ଯେହୁ ଜଣାଣ ସମୁଦ୍ରକୁ ପଢିବ,
ମହା ବିପତ୍ତି ନାଶକରି ଅନ୍ତେ ବୈକୁଣ୍ଠେ ଯିବ ।
ନୃସିଂହ ଅଙ୍କରେ ଜଣାଣ କରୁଅଛଇ ମୁହିଁ,
ପଢିଲା ଶୁଣିଲା ଲୋକଙ୍କୁ ରକ୍ଷାକରିବେ ନୃସିଂହ ।
ଯେହ୍ନେ ଅରତ କାଳେଚନ୍ଦ୍ର ତାକୁ ସାହା ମୁରାରି,
କୁଷ୍ଠବ୍ୟାଧି ଥିଲେ କାଷ୍ଠାରେ ଶୁଣିଲେ ଯେ ନିସ୍ତାର ।
ସାଧୁଚରଣ ଦାସ ଏହା କରୁଅଛି ଭାବନା,
କରଣ କୁଳେ ଜନମ ମୁଁ ହୀନ ପତିତ ସିନା ।
କେବଳ ଶ୍ରୀରାମ ନାମକୁ ହୃଦେ ଗୁଣୁ ଅଛଇ,
ରକ୍ଷାକରିବ ବାରେ ମୋତେ ଅହେ କମଳାସାଇଁ ।
ଶିର ମୋର ରକ୍ଷା କରିବେ ରଘୁକୁଳ ନନ୍ଦନ,
ବେନିକର୍ଣ୍ଣ ରକ୍ଷାକରିବେ ମୋର ବୀର ଲକ୍ଷ୍ମଣ ।
କଣ୍ଠକୁ ସୀତା ରକ୍ଷାକରି ବଚନକୁ ଭରତ,
ବେନି ଚକ୍ଷୁ ରକ୍ଷା କରିବେ ମୋର ଜାନକୀ ପତି ।
ନାସାମୋର ରକ୍ଷା କରିବେ ଶିବଧନୁ ଅରି,
ବେନିବାହୁ ରକ୍ଷାକରିବେ ମୋର କୋଦଣ୍ଡଧାରୀ ।
ହୃଦୟ ରଖିବେ ଶ୍ରୀରାମ ଦଶରଥ ନନ୍ଦନ,
ଉଦର ରଖିବେ ମୋହର ଭ୍ରାତ ଅଗ୍ରଜ ପୁଣ ।
କଟିଭାଗ ମୋର ରଖିବେ କଉଶଲ୍ୟା କୁମର,
ନାଭି କମଳରେ ରଖିବେ ଶତ୍ରୁଘ୍ନ ସୋଦର ।
ହନୁମାନ ପ୍ରଭୁ ରକ୍ଷାରେ କରିବେ ଗୁହ୍ୟ ଜାଣ,
ସର୍ବାଙ୍ଗ ରକ୍ଷାକରିବେ ମୋର ବେନି ଚରଣ ।

ପ୍ରାଚୀଭାଗେ ରକ୍ଷା କରିବେ ସୁଗ୍ରୀବର ମନ୍ତ୍ରୀ,
ଅବାଚୀରେ ରକ୍ଷା କରିବେ ମୋତେ ଜାନକୀକାନ୍ତ ।
ପ୍ରତୀଚୀରେ ବାନ୍ଧ କରିବେ ଅହଲ୍ୟାଗତି-ଦାତା,
ଉତ୍ତର କୋଶଳ-କରତା ଉଦଚରେ ରକ୍ଷ୍ୟା ।
ଏହି ବଚନ କହିଣ ଯେ ହନୁମାନ ତରିଲେ,
ଲଙ୍କାଗଡ଼ରେ ନାଗପାଶ ବନ୍ଧନରୁ ମିଟିଲେ ।
ଏହି ରଘୁନାଥ କବଚ ଯେତେ ମାନବ ଶୁଣି,
ତାର ଅଙ୍ଗମୂରୁ ମେଞ୍ଚଣ କରନ୍ତି ରଘୁମଣି ।
ମାଇକ ବଧିଥିଲେ ତସ୍କର ଭୟ ନଥାଇ ଘରେ,
ଡାକିନୀ ଯୋଗିନୀ ଭୟ ପ୍ରାଣ-ନକରନ୍ତି ଏଥରେ ।
ତୁମ ମହିମା ଯେ ଏସନ୍ତି କେହି ଜାଣଇ ହରି,
ସାଧୁଚରଣ ଦାସ ଏତେକ ଅବଗତେ ସ୍ମରି ।
କରୁଣାସାଗର ଶ୍ରୀରାମ କର କରୁଣା ବାରେ;
ତୁମ୍ଭ ବ୍ୟକ୍ତକଲେ ମୋହର ଅଜ୍ଞାନୀ ସଂସାରେ ।
ଜୟ ଜୟ ଜଗନ୍ନାଥଦେବ ଜୟ ହେ ବଳରାମ,
ଜୟ ସୁଭଦ୍ରା ସୁଦର୍ଶନ ଜୟ ନନ୍ଦ ନନ୍ଦନ ।
ଜୟ ଜୟ ଲକ୍ଷ୍ମୀନୃସିଂହ ଜୟ ଜୟ ବାମନ,
ଜୟ ରାଧିକା ନଟବରହେ ଜୟ ସୀତା ରମଣ ।
ସାଧୁଚରଣ କାତରେ ଯେ ଏହି ନାମ ପସରା,
ଏଥିକୁ ଅନାଦେଯ କରୁଛ ତୁମ୍ଭେ ତୁମ୍ଭକୁ ତୋରା ।
କେହି ଅବା କହିଁ ସାଧୁକେ ତୁମ୍ଭ ମହିମା ଗୁଣ,
ତୁମ୍ଭ ମହିମା ତୁମ୍ଭେ ଜାଣ ଆନ କେହି ଭର୍ଜନ ।

ତୁମ୍ଭ ପାଦ ପଦ୍ମ ଭରସା ନକରେଯ ନିରାଶ,
ନିରତେ ଶରଣ ମାଗଇ ସାଧୁଚରଣ ଦାସ ।
ପଉଦା ବସ ଗ୍ରାମରେ ଯେ ଲକ୍ଷ୍ମୀନୃସିଂହ ବିଜେ,
ସାଧୁଚରଣ ଦାସ ତାଙ୍କ ପଦ୍ମଚରଣ ଭଜେ ।
ନୃସିଂହ ମୂରତି ଧରିଣ ରଘୁନନ୍ଦନ ତହିଁ,
ସାଧୁଚରଣ ଦାସ ଚଉ, ଅବତାର ଖଣ୍ଡଇ ।
ଧନ୍ୟ ଧନ୍ୟ ନୃସିଂହ ମହିମା କିସ ଦେବି ଉପମା,
ଚଉଦ ଭୁବନେ ଜଡ଼ଇ ଭୃତ୍ୟ ପାବନ ବାନା ।
ନୃସିଂହ ନାମ ଭଜିଲେ ଯେ ଦେବ ଦେବୀ ଶଙ୍କନ୍ତି,
ଧନ ଜନ ଲୋକ ଗର୍ଜନ ତୃଣ କାହିଁ ହୁଅନ୍ତି ।
ଏହି ନୃସିଂହ ନାମକୁ ମୁଁ କରିଅଛି ଧାରଣା,
ପାଦପଦ୍ମୁଁ ସ୍ନେହ ମନରୁ କ୍ଷଣେ ନୋହିବ ବଣା ।
ଏହି ନରସିଂହ ଅନ୍ଧ୍ୟଂରେ ମତ୍ସ୍ୟ ମୂରତି ହେଲେ,
କୂର୍ମରୂପ ତ୍ରୈଲୋକ୍ୟ ମନ୍ଦର ଏହି ପୂର୍ବେ ଟେକିଲେ ।
ଏହି ନରସିଂହ ବରାହ ମୂର୍ତ୍ତିରେ ଧରିଣ,
ନୃସିଂହରୂପେ ବିଦାରିଲେ ଦୁଷ୍ଟେ ଦୈତ୍ୟ ହିରଣ୍ୟ ।
ଏହି ନରସିଂହ ପଞ୍ଚମେ ବାମନରୂପେ ହୋଇଲେ,
ବଳିକି ପାଦରେ ଚାପିଣ ପାତାଳରେ ରଖିଲେ ।
ପର୍ଶୁରାମରୂପ ଧରିଣ କ୍ଷତ୍ର କଦମ୍ବ ମାରି,
ଏହି ନରସିଂହ ଶ୍ରୀରାମ ମୂରତି ପୂର୍ବେ ଧରି
ଏହି ନରସିଂହ ଦ୍ୱାପରେ ହୋଇଲେ ନନ୍ଦନନ୍ଦନ,
ଏହି ନରସିଂହ ରୁକ୍ମିଣୀ ରାଧା ମନ ମୋହନ ।

ଜଗନ୍ନାଥ ରୂପ ଧରଣ ନୀଳକନ୍ଦରେ ବସେ,
କଳଙ୍କି ଯେମନ ଦଶବିଧ ନରକେଶରୀ ସାଜେ ।
ଏହି ନରସିଂହ ଚରଣେ ମୋର ସର୍ବଦା ଆଶ,
ରାମନାମ ହୃଦେ ଭାବଇ ସାଧୁଚରଣ ଦାସ ।
କଣାଣପୟୋଧି ଏହି ଯେ ଯେହୁ କର୍ମନେ ଗୁଣି,
ଅବଶ୍ୟ ତାହାର ବସନ୍ତି ଗଣ୍ଡନ୍ତି ଚକ୍ରପାଣି ।
ମୁହିଁ ମାନବସେ ଅଛଇ ମୋର ପ୍ରାକର୍ମ କେତେ,
ଏତେ ସେତେ ମୁହିଁ ନଜାଣି କରେ ସମୁଦ୍ର ମନ୍ଥେ ।
ସମୁଦ୍ର ଅଟଇ କଣାଣ କେହୁ କରିବ ଅନ୍ତ,
ପ୍ରାତଃସନ୍ଧ୍ୟା ସେବା ସମୟେ ଯେବେ ଏହାକୁ ଚନ୍ତ ।
ତେବେ କାମନା ପୂର୍ଣ୍ଣ ହେବ ଜଗନ୍ନାଥ ପ୍ରସନ୍ନେ,
ସାଧୁଚରଣ ଦାସ ଏହା ଭାବ ଅଛଇ ମନେ ।
ଭକ୍ତ ସମୁନ୍ତ ଏ ଅଟଇ ତହିଁ ବୁଡନ୍ତି ମନ,
ବାହାର ନୁହଇ କଦାପି କରୁଅଛି କଣାଣ ।
ଏହି ବର ମୋତେ ସଦସନ୍ତେ ଦେବଦେ କମ୍ବୁପାଣି,
ସଂସାର ଦାବାଗ୍ନିରେ ପଡ଼ି ଦହି ହେଉଛି ପୁଣି ।
କଣାଣ ଅମୃତ ସାଗରେ କରୁଅଛଇ ସ୍ନାନ,
କ୍ଷୁଧା ପିପାସା ମୋର ହର ଶ୍ରୀହରି ମଧୁସୂଦନ ।
ତାପିତ ହୋଇଣ ସଂସାରେ ଥିବ ନନ୍ଦେଙ୍ଗ କାହିଁ,
ଏଣୁ କଣାଣ ପୟୋଧିକୁ ଛନ୍ଦ କର ଏକଇ ।
ମେଘାଡମ୍ବର ଯେ ହୋଇଣ ଅମୃତ ଯେ ବରଷେ,
ତହିଁ ପାନ ମୁହିଁ କରୁଛି କ୍ଷୁଧା ପିପାସ ଅଶେଷ ।

ଦ୍ୱାଦଶ ଯାତ୍ରା ଯେ ଅରମ୍ଭ କରଅଛଇ ଭକ୍ତ ।
ତହିଁ ପାରବଣୀ ଗୁଣ୍ଡିଚା ଯାତ୍ରା କଲ ଅରମ୍ଭ,
ଏତ ପାବନ ବାନାକୁ ଉଡାଇଣ ଅସିବ ।
ନନ୍ଦଘୋଷ ରଥେ ବସିଣ ବେନ ଭୁଜକୁ ଟେକି,
ପତିତ ମାନଙ୍କୁ ଉଦ୍ଧାର କରୁଥାଅଛ ଡାକି ।
ମୁହିଁ ତହିଁ ମଧ୍ୟୁ ବାହାର ହୋଇଲକି ମୁରାରି,
ମୋତେ କିମ୍ପା ଅନୁକମ୍ପା ଟିକେ ନକରୁଛ ବଗୁର ।
ଚକ ଡୋଳି ଚକା ନୟନ ଦେଖି ଯାଅନ୍ତା ଦୁଃଖ,
ନଦେଖି ହୋଇଲି ମୁହିଁ ଯେ କାଠ ବଡ଼ ନିରେଖ ।
ଅଟେ ବଳରାମ ମଧ୍ୟରେ ସୁଭଦ୍ରା ବିଜେ କରି,
ପଛେ ଧୀରେ ଧୀରେ ବିଜୟ କର ନରକେଶରି ।
ଗୁଣ୍ଡିଚା ସମୁଦ୍ର ଅଟଇ ଲୋକ ନୁହଇ କଳଣା,
ଦେବ ନର ମିଳି ଚାମର ଚାଳୁ ଅଛନ୍ତି ସିନା ।
ଶ୍ୟାମଧାମ ସିନ୍ଧୁ ଜଳ ଯେ ଦିଶୁଅଛି ଗୋସାଇଁ,
ନରମାନଙ୍କ ମୁଖ ପୁଣ ମକରକୁମ୍ଭ ହୋଇ ।
ଲହରୀ ପରି ଚାମରମାନ ଦିଶଇ ଜାଣ,
ମନ୍ଦର ପରାୟ ଦିଶୁଛି ନନ୍ଦଘୋଷ ଯେ ଯାନ ।
ରଥ ଚକ୍ର ଦୁ ଦୁ ନାଦ ଯେ ଲହରୀର ଶବଦ,
ଘନ ଘନ ଶୁଭୁଅଛି ଯେ ଠଂ ଠଂ ଘଣ୍ଟାର ନାଦ ।
ଏହା ଦେଖି ସାଧୁଚରଣ ଚିତ୍ତ ହେଲା ସନ୍ତୋଷ,
ମୃଦଙ୍ଗ କଂସାଳ ଭକ୍ତଙ୍କ ଗୀତ ତାଣ୍ଡବ ରସ ।
ଏହି ସମୁଦ୍ରରେ ମୋ ମନ ବୁଡିଅଛି ଗୋସାଇଁ,
ତୁମ୍ଭେ ଉଦ୍ଧାର କରନ୍ତି ହେ ଅନ୍ୟ ଭରସା ନାହିଁ ।

ବୃନ୍ଦାବନ ଅଗ୍ନି ଦହନ୍ତେ ଗୋପୀମାନେ ଅରତ,
ତାଙ୍କୁ ମାୟାକର ଗର୍ଭକୁ କ୍ଷେପିଲ ଅଗ୍ନିପତ ।
ସେହୁ ନଯାଣିଲେ ମାୟାଯେ ତୁମ୍ଭର ହେ ଗୋସାଇଁ,
ସାଧୁଚରଣ ଦାସ ଏହା ଅନ୍ତ କହିବ କାହିଁ ।
ଲକ୍ଷ୍ମୀ ନଜାଣନ୍ତି ତୁମ୍ଭର ମାୟା ଥାଇ ହୃଦରେ,
ବଳଦେବ ନଜାଣିଲେଟି ପୂର୍ବଜ ହୋଇ ଭଲେ ।
ଏତେକ ଗୁଣ ଅଛଇ ହେ ଭୃତ୍ୟଙ୍କୁ ଦୟା ବହ,
ମାୟା କାଟିଣ ଯେ ସଂସାରୁ ଛଡ଼ାଅ ତୁମ୍ଭେ ମୋହ ।
ମୋତେ ଏବେ କିପାଁ କରୁଣା ନୋହିଲଟି ଗୋସାଇଁ,
କେଉଁ ଅପରାଧ କରିଛି ଅଜ୍ଞା କହି ନୁହଇ ।
ପୂର୍ବ ଦୋଷ ଯେବେ ତୁମ୍ଭେ ହୋଇଅଛ ଦାରୁଣ,
ଏବେ କ୍ଷମାକର ନେବହେ କରୁଅଛି ଜଣାଣ ।
କ୍ଷମା ନକଲେ ନଷ୍ଟ ନାଶ ଗଲ କମଳାଯାଇଁ,
ଭକ୍ତଙ୍କ ନିମନ୍ତେ ଚଫେଯେ ତାହାଣ କଟର ବନ୍ଧୁ ।
ତହିଁକି ମୋହର ଭରସା ଅଛି କମଳା ବର,
ସାଧୁଚରଣ ଦାସକୁ ହେ ପ୍ରଭୁ ବାରେ ଉଦ୍ଧର ।
ତୁମ୍ଭ ଗହଣ ଯେ ରୁଚିର ରସ କହିବ ଜାଣି,
କ୍ଷୀର ସାଗର ମଧ୍ୟରେ ଯେ ଅଟେ ତୁମ୍ଭ ଭୁବନ ।
ତେତିଶକୋଟି ଦେବଗଣ ଦଣ୍ଡ କଲୁଭପାଳ,
ବ୍ରହ୍ମା ବ୍ରହ୍ମଋଷି ଯୋଜଣ ହୋଇଅଛଇ ମେଳ ।
ଚଉଷଠି କୋଟି କାତ୍ୟାନ ଯୋଗିନୀଗଣ ଅଛନ୍ତି,
ଚଣ୍ଡିକା ଭୂତ ପିଶାଚଯେ ଶଙ୍କର ଭଗବତୀ ।
ଚଉଦକୋଟି ରୁଦ୍ରଗଣ ଅଛନ୍ତିଯେ ସ୍ଥାନରେ,

ମନ୍ତ୍ରୀ ତାର ଏଷ ପ୍ରଧାନ ହୋଇ ଅଛନ୍ତି ଜାଣ,
ଷଡ଼ ରିପୁଏ ଯେ ତାହାର ଓହଳେ ଧନ ନାଶ ।
ଯେତକ ଉତ୍ତର ମନକୁ ଅଟଗ ଦେଇ କହାନ୍ତି,
ଇନ୍ଦ୍ରିମାନେ ଯେ ଯୋଗାଣିଅ ହୋଇ ଭୋଗ କରନ୍ତି ।
କଳ୍ପଣା ଜଳ ହୋଇଣ ଯେ ବୁଦ୍ଧି ଅଟଇ ଲହରୀ,
ଧୂର୍ତ୍ତ ଦେଣ ପୁନ ଧରସେ ହୋଇଅଛି ମୁଗର ।
ବାସ୍ନାମାନେ ଭେଳା ହୋଇଣ କରନ୍ତି ଗତାଗତ,
ତହିଁରେ ଖେଳଇ ହରଷେ ମୋ ମନ ନିରନ୍ତର ।
ଏଣୁ ମୋର ମନ ଅସ୍ଥିର ନୋହଇଛି ଗୋସାଇଁ,
ମଧ୍ୟରେ ସଂସାରେ ପଡ଼ି ସେହୁ ଭ୍ରମୁଅଛଇ ।
ଅନେକ କାଳରେ କୂଳକୁ ମୁହିଁ କରେ ପ୍ରୟାଣ,
ମଦନ ବତାସ ବହେଣ ପୁଣି ଟାଣଇ ମନ ।
ଏଣୁ ଅସ୍ଥିରସେ ମୋହର ହୋଇନାହିଁ ଗୋସାଇଁ
ନୋହିଲେ ମୋତେ କେଉଁ ରୂପେ ଜଣନ୍ତି ଭବଗାହୁ
ତହିଁ ମୋ ହେତୁ ସେ ଉପାୟ କରୁଛ ନାରଖାର,
ସାଧୁଚରଣରେ ଭକ୍ତି ସେ ଅଙ୍ଗ ହେବ ଉଦ୍ଧାର ।
ସେତେବେ ସଜଳ ହେବ ଅଙ୍ଗ ହେବ କମଳାପାଇଁ,
ଚଣ୍ଡ କଳ୍ପ କୋଟି ଅନଳ ତେଜ ଆସିବ ବହି ।
ସେତେବେ ସମସ୍ତଙ୍କୁ ଦହନ କରିବ ସେ ମୁରଲୀ,
କଳ୍ପଣା ଜଳକୁ ଶୋଷିଲେ ସମସ୍ତ ଯିବ ହରି ।
ତେବେ ମନ ପଶ ଅନ୍ତର ଦେବ ଜଗମୋହନ,
ଅରିଷ ହୋଇ ସେ ଶରଣ ପଶିବ ମୋର ମନ ।
ତୁମ୍ଭ କୃପା ହେଲେ ଏମନ୍ତ ହେବ ନାରାୟଣ,

ଦୃଢ଼େ ଧରିବ ତୁମ୍ଭ ପାଦପଦ୍ମ ହୃଦେ ଶ୍ରୀହରି ।
ଜାଣିବା ତୁମ୍ଭର କରୁଣା ଏହିଠାରେ ଶ୍ରୀଧର;
ଏହି ଦ୍ୱନ୍ଦରୁ ଯେବେ ମୋତେ କରିପାର ଉଦ୍ଧାର ।
ସଂସାର ସାଗର ତରଙ୍ଗ ଘୋଟୁଅଛି ମୁରାରି,
ମୁହିଁ ତହିଁ ଖେଳୁ ଅଛଇ ମୀନରୂପ ଯେ ଧରି ।
ଜନ୍ମ ଜାଲ ଛନ୍ଦି ଦୃଢ ହୋଇ ଚଉପାଶେ ବେଢ଼ିଛି,
କାଳଧୀବର ହୋଇଣ ଯେ ତାହାକୁ ଟାଣୁଅଛି ।
ସେପାଶରୁ ମୋତେ ଉଦ୍ଧାର କେବେ କି ନାରାୟଣ,
ଝାଉଁ ଚରଣେ ଯେ ତହିଁକି କରୁଅଛି ଜଣାଣ ।
ଅବା ଏମନ୍ତ ତୁମ୍ଭ ମନେ କରିବେଟି ଶ୍ରୀଧର,
କର୍ମକୁ ଏହି ନଅଦେଖ ମୋତେ ଦଅଇ ଭାର ।
ତୁମ୍ଭ ଶ୍ରୀକରର କର୍ମ ସିଦ୍ଧ ଅଟଇ ନାରାୟଣ,
ହୃଦ ମଧ୍ୟରେ ଶ୍ରୀହରି ଯେ ହୋଇଥାଅ ଅର୍ପଣ ।
ଶ୍ରୀଧର କଲେ କର୍ମ କରି କର୍ମ କଲେ ଯେ ସିଦ୍ଧି,
ତୁମ୍ଭ ବିନା କେହୁ କରିବ ଶୁଣହେ କୃପାନିଧି ।
କାଳି କର୍ମ ସିନା ତୁମ୍ଭର ଚାରି ବର୍ଣ୍ଣ ଶ୍ରୀଧର,
ତୁମ୍ଭ ବ୍ୟତୀତେ କେ ଅଛନ୍ତି କହ ଜଗୁ ସୋଦର ।
ବ୍ରହ୍ମା ସିଦ୍ଧ କର୍ମ କରଇ ତୁମ୍ଭ ଆଜ୍ଞାରେ ଜାଣ,
ତହିଁ ତୁମ୍ଭେ ପୁଣ ବୁଝିଲେ କରୁଥାଅ ଯେ ଅନ ।
ଛପନ ଗଣ୍ଡା ଯୁଗକୁ ଯେ ଶ୍ରବଣ ବର ପାଇ,
ବ୍ରହ୍ମା ହର ଏହା ଶ୍ରୀହରି ତାକୁ ଦେଲେ ଗୋସାଇଁ
ସେହି ପୁଣ କାଳେ ବ୍ୟର୍ଥ ହୋଇଲା ନାରାୟଣ,
ତାହା ଉଚ୍ଛନ୍ନ ଭେଦିକଲା ଉକ୍ତ ଏ ବିଭୀଷଣ ।

ତୁମ୍ଭ ଅଙ୍କରେ ଯେ କର୍ମକୁ ଅନ କର ସ୍ୱଅଇ,
ସାଧୁଚରଣ ଯେ କହଇ ତୁମ୍ଭ ଚରଣ ଧ୍ୟାଇ ।
ଅର୍ଜ୍ଜୁନକୁ ସଖାଭାବରେ ଦୟାକଲ ଗୋସାଇଁ,
ପୁଣି ତାହାଠାରେ ମାୟାଯେ କଲ କମଳାସାଇଁ ।
ଜଗତ ରୂପ ଧରଣେ ଯେ ଅରଣ୍ୟେ ବୁଲୁଥିଲ,
ତାହାମାନଙ୍କୁ ବଢ଼ିବାର ପାଇଁ ହେ ଚକାଡୋଳା ।
ନବକୁଷ୍ମ ରୂପ ଧରଣ ତାକୁ ଦର୍ଶନ ଦେଲ,
ରଙ୍ଗି ନପାଙ୍କଣ ସସ୍ତ୍ର କଲ ସଣ୍ଡୁ ହୁଦିଲ ।
ଅରତ ମନେ ଖାର ପାର୍ଥ ଚନ୍ଦ୍ରାକଳଙ୍କ ତୋଷତ,
ପ୍ରସନ୍ନହୋଇ ଦର୍ଶନ ଯେ ତାକୁ ଦେଲ୍ ହରତେ ।
ଟଙ୍କି ପାଦତଳେ ପଡଣା ହୁଡକଞ୍ଚ ସେ ପୁଣି,
ଶଙ୍ଖଚକ୍ର ଦେଖାଇଲହେ ତୁମ୍ଭେ ସାରଙ୍ଗପାଣି ।
ଅର୍ଜ୍ଜୁନ ହନୁ ବିବାଦଯେ କଲେ ଖାରପଣରେ,
ଦୁହଙ୍କ ମାନଟି ରଖିଲ କୂଟକର ହୃଦରେ ।
ଏମନ୍ତ ମହିମା ତୁମ୍ଭର ଭକ୍ତଙ୍କୁ ଦୟାକର,
ସାଧୁଚରଣ ଦାସ ପଛୁ କଲ ଲକ୍ଷଦୋଷ ତୋର ।
ତୁମ୍ଭ ଭକ୍ତଙ୍କୁ ଯେ କଲଙ୍କ ସ୍ୱାମୀ ହୋଇବ ଯେବେ,
ତାହାଙ୍କୁ ନିନ୍ଦାଯେ କେମନ୍ତେ ନାଥ ହେବ ଦଇବେ
ତୁମ୍ଭର ବିନା ଏ କରୁଣା ଦୋଷ ଗୁଣ ବଗୃର,
ତେଣୁକରି ନାଥ ଏ ଭାର ଅଟଇଟି ତୁମ୍ଭର ।
ପତିତପାବନ ବାନାଯେ ତୁମ୍ଭରଟି ପ୍ରମାଣ,
ସେ ବାନାରେ ବିନା କଳଙ୍କ ଲଗାଇବ ଅପଣ ।
କେଉଁବା ଜନ ବୋଲିବ ତୁମ୍ଭ ଭୃତ୍ୟ ବୋଲି ସୁବଚି,

ଏବେଆ ଅପଣ ବଗୁର କଲ ଲକ୍ଷ୍ମୀ ଭଣ୍ଡାର ।
ଏହି ସଂସାରେ ଯେ ମିଥ୍ୟାକୁ ସତ୍ୟପ୍ରାୟ ମଣନ୍ତି,
ସତ୍ୟଟାରେ ଦୋଷ ବାଛିଣ ସେହି ଲଗାଇ ଥାନ୍ତି ।
ଶବର ଯେଉଁରୂପେ ଗଜ ମୋତି ଘୃଣା କରି,
ଗୁଞ୍ଜାଫଳ ହାର କରଇ ମୁକ୍ତାକୁ ତ୍ୟାଗ କରି ।
ସେହିରୂପେ ମୂର୍ଖମାନେ ସେ ଭକ୍ତ ବିରୋଧ କରି,
ଦୋଷ ଦେଇଣ ନିନ୍ଦୁଥାନ୍ତି ତାଙ୍କ ଗୁଣ ନଧରି ।
ଏମନ୍ତ ମାନ୍ୟ ମୂର୍ଖଙ୍କେ ପାପିଙ୍କି ମାନ୍ୟ କରି,
ଭକ୍ତଙ୍କର ଦୋଷ ତାଙ୍କର ରସନା ହ୍ରାସି ହର ।
ଯେସନେ ଛାଡ଼ାଏ ରଜକ ବସନରୁ କୁଟିଳ,
ଏହିରୂପେ ନିନ୍ଦା ମାନଙ୍କେ ତୁମ୍ଭ ଭକ୍ତ ଉଜ୍ଜ୍ୱଳ ।
ଏତେକ ମାୟା ତୁମ୍ଭରହେ ଅଛଇ ପୁରାଣି,
ସାଧୁଚରଣ ଦାସ ଏହା ହୃଦ ମଧ୍ୟେ ଘୁମ୍ବରି ।
ଯେତେ ଦୋଷ ଯେ ଲଗାଅ ଅସତ୍ୟ କରି ସତ୍ୟ,
ପାପିଙ୍କି ପୁଣ୍ୟଦେଖି କର ଦୋଷୀ କରାଅ ଦଣ୍ଡ ।
ସତ୍ୟକୁ ମିଥ୍ୟା କରିବାର ମିଥ୍ୟାକୁ କର ସତ୍ୟ,
ଏମନ୍ତ ମହିମା ତୁମ୍ଭର ଅଛଇ ଜଗନ୍ନାଥ ।
ଅହଲ୍ୟା ଦ୍ରୌପଦୀ ତାରାଏ ମନ୍ଦୋଦରୀ ସନ୍ଥତେ,
ଜୋଗୁରଣୀକୁ ସଙ୍ଗ କରି ଭକ୍ତି ଅଛି ଯେବେତ ।
ଲକ୍ଷ୍ମୀଙ୍କ ସମାନ କରିଣ ତାଙ୍କୁ କାହ ସୁନେତ
ଧନ୍ୟ ଅଟଇ ତୁମ୍ଭର ଚରିତ ଶୁଭ ଭାଷା ।
କୁନ୍ତୀ ପତିବ୍ରତା ସମାନ କରିଅଛନ୍ତି ନଷ୍ଟ,
ଧର୍ମିଙ୍କ ଜଳ ନ୍ୟୁନକୁ କରିଛ ଭଗ୍ନ ଭ୍ରଷ୍ଟ ।

ଏମନ୍ତ ମହିମା ତୁମ୍ଭର ତୁମ୍ଭେ କି କି ନକର,
ସାଧୁଚରଣ ଦାସକୁ ଯେ ପ୍ରଭୁ ନରଖି ପାର ।
ନାରଦ ମହାଯତ ବୋଲି ଜାଣନ୍ତେ ସଂସାରେ,
ତାଙ୍କୁ ମାୟୀ କର ଆପଣ ରଖ ଚଣ୍ଡାଳ ଦ୍ୱାରେ ।
ତୁମ୍ଭ ମାୟାରେ ଯେ ଏମନ୍ତ ହୁଅଇଟି ଗୋସାଇଁ,
ଚନ୍ଦ୍ରସେଣା ସଖୀ ମନ୍ଦରେ ତୁମ୍ଭଙ୍କୁ ଧରଥାଇ ।
ଯଶୋଦା ଆଗରେ ଧରଣ ଆସି ସତ୍ୟ କହିଲା,
ତୁମ୍ଭଙ୍କୁ ଦେଖନ୍ତେ ତାହାର କଥା ମିଥ୍ୟା ହୋଇଲା ।
ଦେଖି ଚମତ୍କାର ହୋଇଣ ଫେରିଗଲା ଗୋପାଳ,
ବାନ୍ଧିଲ ଠାବରେ ଦେଖିଲା ନାହାନ୍ତି ନନ୍ଦବାଳ ।
ସତ୍ୟବଚନ ଏହିରୂପେ ମିଥ୍ୟା କର ଆପଣ,
ସାଧୁଚରଣ ଦାସ କହେ ସବୁ ତୁମ୍ଭ ଭିଆଣ ।
ତୁମ୍ଭ ନାମଯେ ଦୀନବନ୍ଧୁ ବୋଲି ମଣି ଥିଲଇଁ,
ଛୁଡଅଛ ବୋଲି ମୋତେ ଯେ ପ୍ରଭୁ ଗୋଚର ନାହିଁ ।
ମୁହିଁ ମଣିଥାଇ ହୃଦରେ ତୁମ୍ଭେ ଦୀନ ବତ୍ସଳ,
କେଉଁ ଦିନ ଏହା ଛାଡିଲ କହ ହେ ଅଦମ୍ଭକ ।
ମୁହିଁ ମଣଇ ଯେଉଁ ଦିନ ରତ୍ନାକର କୁମାରୀ,
ବଦ୍ଧହୋଇ ବନ୍ଧୁପଣ ଯେ ଛାଡିଅଛ ମୁରାରି ।
ସହିଯେ ଯେହ୍ନେ ରତ୍ନାକର ତୁମ୍ଭେ ତାଙ୍କ ଜାମାତା,
ଏଣୁକରି ଲକ୍ଷ୍ମୀ ମାଡିଲା କହେ ହେ ଜଗନ୍ନେତା ।
ସହିଲେ ତୁମ୍ଭ ନାମ ପୁଣି କଳ୍ପତରୁ ମୁରାରି,
ତାହା କେଉଁ ରୂପେ ବନ୍ଧୁଣ ଅଛ ସାରଙ୍ଗ ଧାରୀ ।

ତୁମ୍ଭେଯେ ତ୍ରୈଲୋକ୍ୟ ଠାକୁର ସେହୁ ଅଟେ ସ୍ଥାବର,
ସେନାମକୁ ଛାଡ ଦଅହେ ଅହେ କମଳାବର ।
ଚନ୍ଦ୍ରାମଣି ନାମ ଛାଡ଼ିବ ପାଷାଣରେ ଗଣନା,
ପତିତପାବନ ନାମକୁ ଛାଡ଼ ନଉଡ଼ୁ ବାନା ।
ନୀଳବର୍ଣ୍ଣ ତୁମ୍ଭେ ଛାଡ଼ହେ ତମ ସଙ୍ଗତେ ସବୁ,
ସୁବର୍ଣ୍ଣ କାନ୍ତି ପରସ୍ତୁୟେ ଅଟେ ସିନ୍ଧୁ କୁମାରୀ ।
ଏତେକଥା ଯେବେ ଛାଡ଼ିବ ଲକ୍ଷ୍ମୀକର ମନରେ,
ତେବେ ଦୀନବନ୍ଧୁ ନାମଯେ ନବୋଲିବେ ସଂସାରେ
ନୋହିଲେ ଏନାମ ତୁମ୍ଭଙ୍କୁ ନଛାଡ଼ିବ ଗୋସାଇଁ,
ସାଧୁଚରଣ ଦାସ ପ୍ରଭୁ ସତ୍ୟ କହୁ ଅଛଇ ।
ଏଡ଼େ ବଡ଼ପଣ ତୁମ୍ଭର ଯେବେ ଥିଲା ଅନନ୍ତ,
ତେବେ ବାନର ପଶୁବନ୍ଧୁ ହୋଇଲଟି କେମନ୍ତ ।
ଅରକ୍ଷହୋଇ ସୁଗ୍ରୀବର ବନେ ଭ୍ରମୁଯେ ଥିଲା,
ତାହାସଙ୍ଗେ ବଳେ ମଇତ୍ର ହେଲ ହେ ଚକାଡୋଳା
ରତ୍ନାକର ସୁତାପତିଯେ ବୋଲାଅତ ଆପଣ,
ଶବରୁଣୀ ଚୂତ ଉଚ୍ଛିଷ୍ଟ କିମ୍ପା କଲ ଗ୍ରହଣ ।
ସୁଦାମା ଦ୍ୱିଜ ଦରିଦ୍ରଯେ କେତେ କଷ୍ଟ ନପାଇ ।
କ୍ଷୁଦ୍ର ତଣ୍ଡୁଳ ମୁଷ୍ଟି ନେଇ କଲା ଦର୍ଶନ ଯାଇ,
ଶତକଣ୍ଠି କନା ଶରୀରେ କରିଛି ପରିଧାନ,
ଏଡ଼େ ଧନ ସେହୁଁ ଅଛଇ ଜାଣତ ଭଗବାନ ।
ଯେକାଳେ ଲଙ୍କା ନମାଡ଼ିଲା ତାକୁ କଲ ଆଦର,
କିଆଁ ସେକାଳେ ନଛାଡ଼ିଲ କହିହେ ଦାମୋଦର ।

ତାହାକୁ ଭଯତୟ ନକଲ ଏହା ମନରେ ଚେତ,
ବରୁଣ କୁମାରୀ ସେବନ୍ତି ତାର ପାଦ ଅଗ୍ରତ ।
ଗୋପେ ରହି ବସ୍ତ୍ର ରଖିଣ ଗଉଡ଼ରେ ବଟିଲ,
ମନୁଷ୍ୟ ସ୍ୱଭାବ ବହିଣ ପ୍ରଭୁ ଅବତାର ହେଲ ।
ଗୋପୀଙ୍କ ପାଲଟା ବହିଣ ତାଙ୍କସଙ୍ଗେ ବନସ୍ଥି,
ସେ ବନ ମାନ କେତେଣେଗଲ୍ପ କହି କମଳାସାଇଁ ।
ଅନ୍ଧପୁଅ ନାତେ ମାଇଲା ତାକୁ କଲ କଟୁଣୀ,
ଅନ୍ଧକୁ ବ୍ରହ୍ମାଣ୍ଡ ଦର୍ଶିଲ ନୋହିଲା ସେପନ୍ଥ ବଣା
ସେହିଦିନୁ ତୁମ୍ଭ ନାମଯେ ହେଲା ଧୀନ ବତ୍ସଳ,
ଏବେ କେଉଁ ରୂପେ ସ୍ଥଡ଼ବ କହ ହେ ଅଦ୍ୱମୂଳ ।
ଏମନ୍ତ ଦଯ୍ୟାଳୁ ପୁରୁଷ କାହିଁ ଦେଖିବା ହରି,
ସାଧୁଚରଣ ଦାସ କହେ ନାହିଁ ଏ ଉନପୁରୀ ।
ତୁମ୍ଭ ବିନା କେହ୍ନୁ ଅଛହେ ମୋତେ କରିବ ରକ୍ଷା,
ଅଶେଷ ବ୍ରହ୍ମାଣ୍ଡେ ପୂରଛ ସବୁ ତୁମ୍ଭର ଦକ୍ଷା ।
ଶିବଧନୁକୁ ଭଙ୍ଗିବାର କାଳେ ମିଥିଳାପୁରେ,
ବାସୁକି ସହସ୍ରେ ଫଣାଯେ ନୁଆଇଲା ଢ଼କାଳେ ।
ପୃଥ୍ୱୀ ଟଳଲଯେ ହୋଇଲା ନସହି ଧନୁଭାର,
ଅଚଳ ଚପଳ ହୋଇଲା ଦେଖିଣ ତୁମ୍ଭ ତୋଷ ।
ତାହା ଦେଖି ଧନୁହୁଳଯେ ରଖି ମଣ୍ଡୁକି ପରେ,
ଏମନ୍ତ କରୁଣା କଲଯେ ମଣ୍ଡୁକିରେ ହେ ଧରେ ।
ତାର ଧୀରପଣ ଦେଖିଣ ତାକୁ ପୁଛିଲ ହରି,
ବସୁମତୀ ଅଦ ଚଉଦ ପୁର ଏବର ଧରି ।

ମେରୁ ସିନ୍ଧୁ ଅଦ୍ରି ଆକାଶ ଦଶଦିଗ ଈଶ୍ୱର,
କଇଲାସ ହେମ ପର୍ବତ ଗନ୍ଧମାର୍ଦ୍ଦନ ବର ।
ବ୍ରହ୍ମାଣ୍ଡ କପୋଳ ପର୍ଯ୍ୟନ୍ତ ଯେତେ ଅଛି ଅନନ୍ତ,
ସେହୁ କମ୍ପିଲ ଯନୁଭାର ଭର ଦେଖି ସିନ୍ଧାନ୍ତ ।
ତୁ ଏହା କେମନ୍ତେ ବହନ୍ତୁ ଅଛ ନକର ଭ୍ରାନ୍ତ,
ବଳେ ଭୟଙ୍କର ଲୁଚୁଛେ କାଳ ସର୍ପେ ଗୋଡ଼ାନ୍ତ ।
ଏହା ଶୁଣିକରି ମଣ୍ଡୁକି ବୋଲୁଅଛି ବଚନ,
ମୁଁ କିସ କହିବ ଶ୍ରୀମୁଖରେ ଅନ୍ତର୍ଯ୍ୟାମି ଆପଣ ।
ଦୁଷ୍ଟଗଣଙ୍କୁ ଭୟ୍ଥିଲେ ସାଧୁଙ୍କୁ ଚିନ୍ତା କରି,
ତେବେ ଏ ଦୁଃଖରୁ ଉଦ୍ଧାର ହୁଅନ୍ତି ମୁରାରି ।
ତୁମ୍ଭେ ତ ତ୍ରିଲୋକ୍ୟ ଠାକୁର ତୁମ୍ଭେ ନଯାଣ ଈସ,
ତୁମ୍ଭ ଠାରୁ ବଡ଼ ଅଛି କେ କହ କମଳା ଈଶ ।
କାଳ ବେଢ଼ିଲେ ତୁମ୍ଭେ ବେଗେ ରକ୍ଷାକର ଶ୍ରୀଧର,
ତୁମ୍ଭେ ମାଇଲେ କେହୁ ରକ୍ଷା କରିବନ୍ତି ଶରୀର ।
ଏମନ୍ତ ବଚନରେ ମଗ୍ନ ହୋଇଅଛି ଗୋସାଇଁ,
ଏହା ଶୁଣି ଦୟା କଲେ ମଣ୍ଡୁକି ସେଠାଇଁ ।
ଏମନ୍ତ ପ୍ରଭୁ ଦୟାଶୀଳ ଅଛନ୍ତି କେଉଁ ଠାରେ,
ଏଣୁ ତୁମ୍ଭନୁ ଅନ୍ୟେ ନାହିଁ ଚଉଦ ପୁରେ ।
ସାଧୁଚରଣ ଦାସ ପ୍ରଭୁ ତୁମ୍ଭେ କରୁଛି ଆଶ,
ଶ୍ରୀ ଜଗନ୍ନାଥ ମୋହ ଠାରେ ନକର ନିରାଶ ।
ତୁମ୍ଭ ଭକ୍ତମାନେ ସଂସାରେ କରୁଛନ୍ତି ପବନ,
ସ୍ତ୍ରୀ ଶୁଦ୍ର ଯବନ ଚଣ୍ଡାଳ ପାବନ କଲେ ସତ୍ୟ ।

ଦୁର୍ବାସା ଉପଦେଶପାଇ ସ୍ତ୍ରିୟଗଣ ତରିଲେ,
ଅଗସ୍ତି ଶୁଦ୍ର ତାର କୀର୍ତ୍ତିରଖି ମଞ୍ଚ ମଣ୍ଡଳେ ।
ତାରିଛନ୍ତି ବିଶ୍ୱାମିତ୍ରଯେ ପତିତକୁ ସୁରଥ,
ପୌଲସ୍ତି ଗୃଣ୍ଡାଳ ତାରିଲେ ତୁମ୍ଭ ସେବାକୁ କରି ।
ତୁମ୍ଭ ସେବା ନାଥ ଏମନ୍ତ କେତେ ପାପୀ ତରନ୍ତି,
ମୁଁ କେଉଁ ଦୋଷ କରିଅଛି ଏଥୁ କହ ଶ୍ରୀପତି ।
ଯେପାଇଁ ସଦୟ ହୋଇଣ ନକରୁଛ କାରଣ,
ସାଧୁଚରଣ ଦାସ କହେ ମୁହିଁ ତୋର ଶରଣ ।
ରୁକ୍ମିଣୀ କୁମର ପ୍ରଦ୍ୟୁମ୍ନ ତୁମ୍ଭର ଅଟଇ ସୁତ,
ଚକ୍ର ପେଷି ତାକୁ ଆପଣେ କରିଅଛ ଯେ ହତ ।
ଦ୍ୱାପରଯୁଗ ଶେଷହେଲା ବୋଲି କଲ ବଗୁର,
କିଛିହିଁ ଦୟା ନକରିଲ ସେଥେ ତୁମ୍ଭ କୁମର
ସପ୍ତବାର ଚକ୍ର ପେଷିଲ ତୁମ୍ଭ କୁମର ବୋଲି,
ନିଷ୍ଠୁର ପଣ ଦେଖିଣଯେ ଚକ୍ର ତହୁଁ ନିବାରି ।
ପ୍ରଦ୍ୟୁମ୍ନ ମରନ୍ତେ ତାହାର ସୁତଯେ ଅନିରୁଦ୍ଧ,
ତୁମ୍ଭ ପାଦପଦ୍ମେ ଶରଣ ପଶିଲା କରି କ୍ରୋଧ ।
ବୋଇଲା ମୁହିଁ ତୁମ୍ଭ ନାତି ମୋତେ ରକ୍ଷା କରିବ,
ତେତେବେଳେ କରୁଣା ନୋହିଲା ଅହେ ଶୁଣ ମାଧବ ।
ଅତି କାକୁସ୍ଥ ହୋଇକରି ସେହୁ ଜଣାଣ କଲା,
ମୋତେ ରକ୍ଷାକର ଏଥର ଅହେ ନନ୍ଦର ବଳା ।
ଏକଥା ଶୁଣିଣ ଆପଣେ ବୋଲିଅଛନ୍ତି ଯାହା,
ସେକଥା କେଅବା କହିବ ଶୁଣହେ ଚକ୍ରବାହା ।

କଳଯୁଗେ ଜନ୍ମ ହୋଇବୁ ମାନବ ରୂପ ଧରୁ,
ଅନାନାଡ ଭ୍ରବ ସେଠାରେ କରବୁଟି ବଗୃହ ।
ଏମନ୍ତ କହଣ ତକ୍ଷରେ ତାକୁ କଲଟି ନାଶ,
ତାର କୁନର ବଜ୍ରନାଭ ତାକୁ କଲ ନରେଶ ।
ଏହାଦେଖି ବଳଦେବଯେ ମହା ଭୟ ପାଇଲେ,
ଅନନ୍ତ ରୂପ ଧରଣଯେ ପାତାଳରେ ପଶିଲେ ।
ଏହେ ନଷ୍ଟୁର ମହାପ୍ରଭୁ ବୋଲ କରଇ ଭୟ,
ବଡାଇ ଛଣ୍ଡାଅ ଅପଣେ ତୁମ୍ଭେ ଦେବାଧ୍ୱ ସ୍ୱୟ ।
ଏହି କଥାକୁ ମୁଁ ଡରଇ ଅହର୍ନିଶି ମୁରାର,
ସାଧୁଚରଣ ଦାସ ଏହା ନରବଧି ସୁମର ।
ତୁମ୍ଭ ନବାସ କେ ଜାଣଇଁ ତୁମ୍ଭେ କାହିଁରେ ଥାଅ,
ଅଦ୍ୟରେ ବ୍ରହ୍ମାର ନବର ସେଯେ ତୁମ୍ଭର ପୁଅ ।
ତହିଁପରେ ଶିବଲୋକଯେ ତହିଁ ଉର୍ଦ୍ଧରେ ଶକ୍ତ,
ଦେବ ଧାମ ତାକୁ ବୋଲନ୍ତ ଶୁଣଅହେ ଶ୍ରୀପତ ।
ତଥିମଧ୍ୟେ ବଇକୁଣ୍ଠଯେ ତୁମ୍ଭ ଯୋଗ ଅସନ,
ଯୋଗୀମାନେ ଯାକୁ ନରତେ କରୁଅଛନ୍ତ ଧ୍ୟାନ ।
ତହିଁପରେ ନତ୍ୟ ଗୋଲକଧାମ ଅଟେ ମୁରାରୁ,
ବ୍ରହ୍ମା ରୁଦ୍ର ଅଗୋଚର ବ୍ରଜଭୂମି ବଗୃହ ।
ସଖିକା ପ୍ରେମ କୁଚେ ଜଡ଼ ନନ୍ଦଶେ କଳେବର,
ଏଣୁକେ ଜାଣିବ ତୁମ୍ଭଙ୍କୁ କହ କରୁଣାକର ।
ଏଣୁ ଅଗୋଚର ଅଟଇ କେହି ଜାଣିବ ହର,
କେବଳ ତୁମ୍ଭ କୃପାହେଲେ ସବୁ ଗୋଚର କର ।

ଏଡ଼େ ଏଡ଼େ ଲୋକ ମାୟାରେ ବଣା ହୋଇଅଛନ୍ତି
ତୁମ୍ଭ ମାୟାରୁ କେ ବଳଛି କହ କମଳାପତି ।
ଶୂନ୍ୟ ବିନ୍ଦୁ ରୂପ ଯେଉଁ ବ୍ରହ୍ମରୂପ ନିସ୍ତଳ,
ତାହାଠାରୁ ବ୍ରହ୍ମି ମାୟାଯେ ଅର୍ଦ୍ଧ ମାତ୍ରା ନିକର ।
ତହିଁରେ ଜକାର ଅଛଇ କାମବୀଜ ହୋଇଣ,
ରମା ବୀଜ ତହୁଁ ବାହାର ବେଦତହୁଁ ଜନମ ।
ପର ଅଟଇ ଶେଷଦେବ ଶେଷଦେବ ଅନନ୍ତ,
ଅନନ୍ତ ବଳଭଦ୍ର ରୂପ ଶୁଣହେ ଜଗନ୍ନାଥ ।
ସେପୁଣ ବୈକୁଣ୍ଠ ସ୍ୱରୂପ ବଣା ହୋଇଅଛନ୍ତି,
ଅଳ୍ପକେ ତୁମ୍ଭଙ୍କୁ ଜାଣିବ କିସ କମଳାପତି ।
ଏରୂପେ ଭକତ ବାନ୍ଧବ ହୋଇ ଥୁଅହେ ଯାହା,
କେଅବା ଏହା ଜାଣିଅଛି ଅହେ ଜଗତ ନାହା ।
କାହିଁ ଥାଇ କେଉଁ ରୂପରେ ତୁମ୍ଭେ କର କାରଣ,
ତୁମ୍ଭ କଥା ତୁମ୍ଭେ ଜାଣନ୍ତି କେହ୍ନୁ ଜାଣଇଁ ଅନ ।
ମୁ ଅବା କେଉଁ ଗଣନାରେ ଏହା ଜାଣିବି ହରି,
ଏଡ଼େ ବଡ଼ ଲୋକମାନେ ଯେ ଯାଅନ୍ତି ଅପସରି ।
କେବଳ ଦୀନବନ୍ଧୁ ତୁମ୍ଭେ ଦୀନଜନ ସୋଦର,
ଏଥିକୁ ମୋହର ଭରସା ଅଛି କମଳାବର ।
ଦୟାକଲେ ରେଣୁ ପର୍ବତ ସମ ହୁଅଇ ଜାଣ,
ନିର୍ଦୟାରେ ଗିରି ରେଣୁକୁ କାହୁ ହୋଇବ ସମ ।
ଏମନ୍ତ ମହିମା ତୁମ୍ଭର କେହ୍ନୁ ଜାଣେ ମୁରାରି,
ସାଧୁଚରଣ ଦାସ ମନ ଏଣୁଟେଯେ ଅପସରି ।

ତୁମ୍ଭେ ସିନା ଭକ୍ତମାନଙ୍କ ହୃଦେ କରି ନିବାସ,
ଯାହା ଯେବେଳେ ବିଗୃରି ତାହାଙ୍କର ପ୍ରକାଶ ।
ଏଣୁ ଭଗବତ ମୂରତି ଅଟଇଟି ତୁମ୍ଭର,
ଭକ୍ତାବତାର ବୋଲିଣ ଯେ ବେଦେ କହେ ବିସ୍ତର
ଶ୍ରୁତି ସ୍ମୃତି ପୁରାଣଯେ ତୁମ୍ଭ ଆଜ୍ଞା ପ୍ରମାଣ,
ଏହା ଯେଉଁମାନେ ଲଙ୍ଘନ୍ତି ସେହୁ ମୂଢ଼ଟି ଜାଣ ।
ତୁମ୍ଭ ଆଦେଶ ହୋଇଣ ତାର ନୁହଇ ଗତି,
ସଦା ବିପତ୍ତିମାନ ଘଟେ ସେହୁ ନପାବର ତେତ ।
ତୁମ୍ଭର ଯନ୍ତୁ ତାହାଠାରେ ମାୟାଭ୍ରମେ ମୁରାରି,
ଏଣୁ ତହାଣିରେ କାଳଯେ ବସି ବ୍ୟାକୁଳକରି ।
ଇହ ପରଲୋକ ସୁଖଯେ ତାକୁ ନମିଳେ ତଳେ,
କେବଳ କାଳ ଆକର୍ଷଇ ତାର କୁକର୍ମ ବଳେ ।
ସବୁକଥାମାନ ତୁମ୍ଭର ଅନୁଭବଯେ ଗୋସାଇଁ,
ତୁମ୍ଭ ଭକ୍ତ ଅପରାଧିଙ୍କି କ୍ଷମାକରଯେ ନାହିଁ ।
ଯେଣୁ ତୁମ୍ଭେ ଭକ୍ତ ପ୍ରିୟହେ ତେଣୁ କର ଏମନ୍ତ,
ସାଧୁଚରଣ ଦାସ ଦ୍ରୋହୀ ହୋଇଛନ୍ତି ଅନନ୍ତ ।
ପଞ୍ଚମୂରତି ଧରିଣ ଯେ ଦ୍ୱାପରେ ବିହରିଲ,
ପଞ୍ଚ କୃଷ୍ଣରୂପ ତୁମ୍ଭର ବୋଲଇ ଆଦମୂଳ ।
ସଙ୍କର୍ଷଣ ବାସୁଦେବଯେ ପ୍ରଦ୍ୟୁମ୍ନ ଅନିରୁଦ୍ଧ,
ସୁଦରଶନ ନାମପୁଣ ଅଟଇ ପଞ୍ଚବିଧ ।
ପଞ୍ଚ ମୂରତି ଧରିଣଯେ ଦ୍ୱାପର ଭୋଗକଲ,
ବଳଭଦ୍ର ରୂପେ ଦ୍ୱାରିକା ଭୁବନକୁ ପାଳିଲ ।

ବାସୁଦେବ ନାମ ବହଣ ମଥୁରାର ରକ୍ଷତା,
ଗୋପରେ କନ୍ଦର୍ପ ସୃଷ୍ଟିରେ ଗାର୍ଗୀଙ୍କର ଧରତା ।
ଉଷାପତି ପ୍ରାପ୍ତ ହୋଇଣ ବୃନ୍ଦାବନ ତପର,
ନିତ୍ୟ ବୃନ୍ଦାବନ ସୁଦରଶନ ହୁତ ଅଂଶର ।
ଧନ୍ୟ କୃଷ୍ଣ ଏହି ରୂପେ ଯେ ବିହରୁଅଛ ହରି,
ସାଧୁଚରଣ ଦାସ କହେ କିପାଁ ମାୟା ଅଛି ।
ଏତେବ ସମସ୍ତ ଦୋଷ ମୋର କରିବ ତୁମ୍ଭେ କ୍ଷମା,
ସାଧୁଚରଣ ଦାସ କହେ ଅଜ୍ଞାନୀ ଜନମା ।
କାମ ରକ୍ଷୀ କ୍ରୋଧ ମୁଖ ଯେ ହଂସା ଶ୍ରବଣେ ଆଇ,
ନାଶ ମୋହ ଦେହ ମାୟାଯେ ପଞ୍ଚେନ୍ଦ୍ରି ଦେ ଏହି ।
ପଞ୍ଚେନ୍ଦ୍ରିକି ବ୍ୟର୍ଥ କରିଲେହେ ଏବେ ନୁହନ୍ତି ସମ୍ଭବ,
ମୂର୍ଖ ବୋଇଲେ ସ୍ୱାଦୁ ଯେବେ ରସନରେ ନାହିଁବ
ଚକ୍ଷୁ ଥାଇ କିସ କରିବ ଯେବେ ଲକ୍ଷ୍ୟ ନଥାଇ,
ନାସାରେ ବାସନା ବାଇଲେ ଯେବେ ବାରି ନୁହଇ
କର୍ଣ୍ଣରେ ଶବଦ ବାଜଲେ ବଳେ ନକରେ ବାସ,
ତାବ ପୁଲକିତ ନୋହିଲେ ପ୍ରେମରେ ଅପ୍ରକାଶ ।
ଜାଣିଣ ଜଣାଣ ବୋଇଲେ ସବୁ ଫଳ ମିଳିବ,
ସାଧୁଚରଣ ଦାସ କହେ ଯେବେ କରୁଣା ହେବ ।



ଶ୍ରୀ ଜ୍ଞାନୋଦୟୋଧ୍ୟ ସମ୍ପୂର୍ଣ୍ଣ